# ଶହୀଦ ଭଗତ ସିଂଙ୍କ ଶହୀଦତ୍ୱ ବ୍ୟର୍ଥ କି ?



ଅଧ୍ୟାପକ ନୀଳମଣି ସାହୁ

# ଶହୀଦ ଭଗତ ସିଂଙ୍କ ଶହୀଦତ୍ୱ ବ୍ୟର୍ଥ କି ?

(ଶହିଦ୍ ଭଗତ୍ ସିଂଙ୍କ ଜନ୍ମ ଶତବାର୍ଷିକୀ ଉପଲକ୍ଷେ ପ୍ରକାଶିତ)

ଲେଖକ :
ଅଧ୍ୟାପକ ନୀଳମଣି ସାହୁ
ରେଡ୍ଡି ବଙ୍ଗଳା, ଚନ୍ଦ୍ରପ୍ରଭା ସାହି
ବ୍ରହ୍ମପୁର - ୭୬୦୦୦୧

ପ୍ରଥମ ପ୍ରକାଶ : ଅକ୍ଟୋବର ୦୭

ସଂଖ୍ୟା : ୧୦୦୦

ମୂଲ୍ୟ : ୧୫ ଟଙ୍କା

ପ୍ରକାଶକ
ଶହିଦ୍ ଭଗତ୍ ସିଂ ସ୍ମୃତି କମିଟି
୨୫୧୦ (ଜେ) କେଦାରଗୌରୀ ଅଞ୍ଚଳ
ଭୁବନେଶ୍ୱର - ୭୫୧୦୦୨

ମୁଦ୍ରଣ :
ବାସନ୍ତୀ ଅଫ୍‌ସେଟ୍
ରାମକୃଷ୍ଣ ନଗର -୩,
ବ୍ରହ୍ମପୁର - ୭୬୦୦୦୧

# ଅମର ଶହୀଦ ଭଗତ ସିଂ
## ଏକ ସଂକ୍ଷିପ୍ତ ଜୀବନୀ

ଭଗତ ସିଂ ଲୟାଲ୍‌ପୁର ଜିଲ୍ଲାର ବଙ୍ଗା ଗ୍ରାମର ଏକ ଆନ୍ଦୋଳନରତ ସ୍ୱାଧୀନତା ସଂଗ୍ରାମୀ ପରିବାରରେ ୧୯୦୭ ସେପ୍ଟେମ୍ବର ୨୮ରେ ଜନ୍ମ ଗ୍ରହଣ କରିଥିଲେ । ୧୯୧୧-୧୨ରେ ନିଜ ଗ୍ରାମରେ ଥିବା ଜିଲ୍ଲା ବୋର୍ଡ ପ୍ରାଥମିକ ବିଦ୍ୟାଳୟରେ ନାମ ଲେଖାଇ ଥିଲେ। ଏହି ସମୟରେ ମାତ୍ର ଉଣେଇଶ ବର୍ଷ ବୟସର ସ୍ୱାଧୀନତା ସଂଗ୍ରାମୀ ତଥା ଗଦର (ବିପ୍ଳବ) ପାର୍ଟିର ନେତା, କର୍ତ୍ତାର ସିଂ ସରାଭାଙ୍କୁ ବ୍ରିଟିଶ୍ ସରକାର ଫାଶି ଦେଇଥିଲେ । ଏହା ଭଗତ ସିଂଙ୍କୁ ଏପରି ଗଭୀର ଭାବେ ପ୍ରଭାବିତ କରିଥିଲା । ଯେ ସେ ସର୍ବଦା ସରାଭାଙ୍କ ଫୋଟଟିଏ ପାଖରେ ରଖୁଥିଲେ ଓ ତାଙ୍କୁ ନିଜ ଜୀବନର ଆଦର୍ଶ କରିଥିଲେ । ପଞ୍ଚମ ଶ୍ରେଣୀ ଉତ୍ତୀର୍ଣ୍ଣ ହେବା ପରେ ସେ ୧୯୧୬-୧୭ ରେ ଲାହୋରର ଡି.ଏ.ଭି. ସ୍କୁଲରେ ନାମ ଲେଖାଇଲେ । ଏହି ସମୟର ଆଉ ଏକ ପ୍ରଭାବଶାଳୀ ଘଟଣା ହେଲା ଜାଲିଆନୱାଲା ହତ୍ୟାକାଣ୍ଡ । କିଶୋର ବୟସର ଏହି ଭଗତ ସିଂ ଲାହୋରରୁ ଅମୃତସର ଯାଇଥିଲେ ଶହୀଦମାନଙ୍କୁ ତାଙ୍କର ସମ୍ମାନ ଜଣାଇବା ପାଇଁ । ସେଇଠୁଁ ସେ ଶହୀଦ ରକ୍ତରେ ଭିଜା ଲାଲ ମାଟି ଆଣି ବୋତଲରେ ରଖିଥିଲେ, ଯାହା ତାଙ୍କ ପାଇଁ ସର୍ବଦା ଏକ ପ୍ରେରଣାର ଉତ୍ସ ହୋଇ ରହିଥିଲା ।

ଅସହଯୋଗ ଆନ୍ଦୋଳନର ଆହ୍ୱାନରେ ୧୯୨୧ରେ ନବମ ଶ୍ରେଣୀର ଛାତ୍ର ଭଗତ ସିଂ ଡି.ଏ.ଭି. ସ୍କୁଲ ଛାଡ଼ି ଥିଲେ । କିନ୍ତୁ ସ୍କୁଲପଢ଼ା ଶେଷ ନ ହୋଇଥିଲେ ସୁଦ୍ଧା, ପରେ ସେ ଏକ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଭାଇ ପରମାନନ୍ଦ ଓ ଲାଲା ଲାଜପତ ରାୟଙ୍କ ଦ୍ୱାରା ଲାହୋରରେ ସ୍ଥାପିତ ନ୍ୟାସ୍‌ନାଲ କଲେଜରେ ନାମ ଲେଖାଇ ଥିଲେ । ଏହି ସମୟରେ ସେ ପ୍ରଫେସର ଜୟଚାନ୍ଦ ବିଦ୍ୟାଳଙ୍କାରଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲେ ।

ମାତ୍ର ସତର ବର୍ଷ ବୟସରେ ସେ ଦେଶ ପାଇଁ ନିଜକୁ ଉତ୍ସର୍ଗ କରି ଦେଇଥିଲେ । ତେଣୁ ୧୯୨୪ରେ ତାଙ୍କର ବିବାହ ପ୍ରସ୍ତାବରେ ବିବ୍ରତ ହୋଇ ସେ ପଢ଼ା ଛାଡ଼ି କାନପୁର ଚାଲିଗଲେ । ପ୍ରଫେସର ଜୟଚାନ୍ଦ ବିଦ୍ୟାଳଙ୍କାର କାନପୁରର ପ୍ରତାପ ପ୍ରେସର ଗଣେଶ ଶଙ୍କର ବିଦ୍ୟାର୍ଥୀଙ୍କ ନିକଟକୁ ଏକ ପତ୍ର ଦେଇଥାନ୍ତି । ଭଗତ ସିଂ

'ବନ୍ଧୁଓ୍ବନ୍ତ' ଛଦ୍ମନାମରେ ପ୍ରତାପ ପ୍ରେସରେ କାମ କଲେ। ଏଠାରେ ବଟୁକେଶ୍ୱର ଦତ୍ତ, ଚନ୍ଦ୍ରଶେଖର ଆଜାଦ, ଯୋଗେଶ ଚନ୍ଦ୍ର ଚାଟାର୍ଜୀ, ବିଜୟ କୁମାର ସିହ୍ନା ଓ ଅନ୍ୟ ବିପ୍ଳବୀମାନଙ୍କ ସହ ଭଗତ ସିଂଙ୍କର ଦେଖା ହୋଇଥିଲା। ୧୯୨୫ରେ ଜେଜୀମାଙ୍କ ଅସୁସ୍ଥତା ଯୋଗୁଁ ଲାହୋର ଫେରି ଥିଲେ ।

ସେତେବେଳେ ପଞ୍ଜାବରେ ଅକାଳି ଆନ୍ଦୋଳନ ଚାଲୁଥିଲା ଓ ତାର ଏକ ଯାଥା ବାଙ୍ଗା ଗ୍ରାମ ଦେଇ ଯିବା କାର୍ଯ୍ୟକ୍ରମ ଥିଲା। ସେହି ଯାଥାକୁ ସ୍ୱାଗତ କରିବା ଭାର ପିତା ଅଜୀତ ସିଂ ଭଗତ ସିଂଙ୍କୁ ଦେଇଥିଲେ। ଯାଥାକୁ ସ୍ୱାଗତ କରିବା ଅପରାଧରେ ଭଗତ ସିଂଙ୍କ ନାମରେ ୱାରଣ୍ଟ ଜାରି ହୋଇଥିଲା। କିନ୍ତୁ ସେ ସେଠାରୁ ଖସି ଲାହୋର ଓ ପରେ ଦିଲ୍ଲୀ ପଳାଇ ଯାଇଥିଲେ ଓ ସେଠାରେ ଦୈନିକ କାଗଜ *ବୀର ଅର୍ଜୁନ* ରେ ପାଞ୍ଚ ଛଅ ମାସ ପାଇଁ କାମ କରିଥିଲେ। ଅକାଳି ଆନ୍ଦୋଳନ ପ୍ରତ୍ୟାହାର ହେବା ପରେ ସେ ଲାହୋର ଫେରିଥିଲେ।

ଲାହୋର ଫେରିବା ପରେ ସେ କିର୍ତ୍ତୀ-କିସାନ ପାର୍ଟିର ପ୍ରତିଷ୍ଠାତା ସୋହନ ସିଂ ଯୋଷଙ୍କ ସହ ସମ୍ପର୍କ ସ୍ଥାପନ କରିଥିଲେ ଓ ତାଙ୍କର ପତ୍ରିକା *କିର୍ତ୍ତୀ* ପାଇଁ କେତେକ ଲେଖା ଲେଖିଥିଲେ। ଏହି କାଳରେ କାକୋରୀ ଷଡ଼ଯନ୍ତ୍ର ମାମଲାରେ ଗିରଫ ହୋଇଥିବା ସାଥୀମାନଙ୍କୁ ମୁକ୍ତଲେଇବା ପାଇଁ ଦୁଇଥର ଯୋଜନା ହୋଇଥିଲା ଓ ସେଥିପାଇଁ ଭଗତ ସିଂ କାନପୁର ଯାଇଥିଲେ, କିନ୍ତୁ ଦୁଇଥରଯାକ ସେହି ଯୋଜନା କାର୍ଯ୍ୟକାରୀ ହୋଇପାରି ନଥିଲା। ମାର୍ଚ୍ଚ ୧୯୨୬ରେ ସେ ତାଙ୍କ ବନ୍ଧୁମାନଙ୍କ ସହଯୋଗରେ 'ନଉ ଜୱାନ ଭାରତ ସଭା' ସ୍ଥାପନ କରିଥିଲେ। ରାମ କୃଷ୍ଣ, ବି.ଏ.(ନ୍ୟାସନାଲ) ତାର ସଭାପତି ଓ ଭଗତ ସିଂ ସମ୍ପାଦକ ହୋଇଥିଲେ।

ଅକ୍ଟୋବର ୧୯୨୭ରେ ଲାହୋରରେ ଦଶହରା ପର୍ବର ଜନଗହଳି ମଧ୍ୟକୁ କେହି ଜଣେ ଦୁର୍ବୃତ୍ତ ବୋମାଟିଏ ଫୋପାଡ଼ି ଦେଲା। ବାର ଜଣ ନିରୀହ ଲୋକ ମଲେ ଓ ଛପନ ଜଣ ଆହତ ହେଲେ। କିନ୍ତୁ ସରକାର ସେହି ଅପରାଧକୁ ଭଗତ ସିଂଙ୍କ ମୁଣ୍ଡରେ ବୋଳି ତାଙ୍କୁ ଗିରଫ କଲେ। ତାଙ୍କ ପିତାମାତା ଓ ଜନତାଙ୍କ ଚାପରେ ୬୦,୦୦୦ ଟଙ୍କା ଜାମିନ୍‌ରେ ସେ ଛାଡ଼ ପାଇଲେ। କିନ୍ତୁ ସରକାର ତାଙ୍କର ବିଚାର କଲେନି କି ଜାମିନ୍ ରଦ୍ଦ କଲେନି। ଭଗତ ସିଂଙ୍କ ପରାମର୍ଶରେ ଜାମିନ୍‌ଦାରମାନଙ୍କ ଦାବୀରେ ଜାମିନ୍ ରଦ୍ଦ ହୋଇଥିଲା।

ଜୁନ ୧୯୨୮ରେ ନଉ ଜୱାନ ଭାରତ ସଭାର ଏକ ଅଙ୍ଗ ହିସାବରେ ଲାହୋର ଷ୍ଟୁଡେଣ୍ଟସ୍ ୟୁନିଅନ ଗଠନ କରିଥିଲେ। ସେହି ବର୍ଷର ସେପ୍ଟେମ୍ବର ମାସରେ ସେ କୋଟଲା ଫିରୋଜ୍ ସାହ ଠାରେ ହୋଇଥିବା ହିନ୍ଦୁସ୍ଥାନ ରିପବ୍ଲିକାନ ଏସୋସିଏସନର

ବୈଠକରେ ଯୋଗ ଦେଇଥିଲେ ଓ ୧୭ ଡିସେମ୍ବର ଦିନ କୁଖ୍ୟାତ ସଣ୍ଡେର୍ସଙ୍କ ହତ୍ୟା କାର୍ଯ୍ୟକ୍ରମରେ ଅଂଶଗ୍ରହଣ କରିଥିଲେ।

ପବ୍ଲିକ୍ ସେଫଟି ବିଲ୍ ଓ ଟ୍ରେଡ୍ ଡିସପ୍ୟୁଟସ୍ ବିଲ୍‌ର ପ୍ରବଳ ବିରୋଧ ସତ୍ୱେ, ୧୯୨୯ ଏପ୍ରିଲ ୮ ଦିନ ଭାଇସ୍‌ରାୟ ତାଙ୍କ ଘୋଷଣା ବଳରେ ବିଲ୍ ଦୁଇଟିକୁ ଆଇନରେ ପରିଣତ କଲେ। ବ୍ରିଟିଶ୍ ଶାସନକୁ ଚେତାବନୀ ଶୁଣେଇବା ଉଦ୍ଦେଶ୍ୟରେ ଭଗତ ସିଂ ଓ ବଟୁକେଶ୍ୱର ଦତ୍ତ ଏସେମ୍ଲି ହଲ୍‌ରେ ଦୁଇଟି ବୋମା ଫୁଟାଇଲେ ଓ ହିନ୍ଦୁସ୍ଥାନ ରିପବ୍ଲିକାନ ଏସୋସିଏସନର ପ୍ରଚାରପତ୍ର ଏସେମ୍ଲି ହଲ୍ ମଧ୍ୟକୁ ଫୋପାଡ଼ିଲେ। ସମସ୍ତ ସୁଯୋଗ ସତ୍ୱେ ଖସି ନଯାଇ ଗିରଫ ହେବା ପାଇଁ ଅପେକ୍ଷା କରି ରହିଲେ। ଉଦ୍ଦେଶ୍ୟ ଥିଲା ବିଚାର ବେଳେ ସେମାନଙ୍କର ଆଦର୍ଶକୁ ଭାରତର ଜନଗଣଙ୍କୁ ଜଣେଇବେ ଓ ବ୍ରିଟିଶ୍ ବିରୋଧୀ ସ୍ୱାଧୀନତା ଆନ୍ଦୋଳନକୁ ପ୍ରୋତ୍ସାହିତ କରିବେ। ମଇ ୭ରେ ସେମାନଙ୍କର ବିଚାର ଆରମ୍ଭ ହେଲା। ଜୁନ ୬ରେ କୋର୍ଟରେ ସେ ତାଙ୍କର ଐତିହାସିକ ବିବୃତି ଦେଇଥିଲେ, ଯହିଁରେ ସେ ଜନତା ଦରବାରର କାଠଗଡ଼ାରେ ବ୍ରିଟିଶ୍ ଶାସନକୁ ଠିଆକରି ତାର ବିଚାର କରିଥିଲେ। ଜୁନ ୧୨ରେ ଦୁହିଁଙ୍କୁ ଆଜୀବନ ଦ୍ୱୀପାନ୍ତର ଦଣ୍ଡାଦେଶ ହୋଇଥିଲା।

ରାଜନୈତିକ ବନ୍ଦୀଙ୍କ ପାଇଁ ଜେଲ୍‌ରେ ସେତେବେଳେ ସେମିତି କିଛି ବିଶେଷ ସୁବିଧା ନଥିଲା। ଅନ୍ୟାନ୍ୟ ବନ୍ଦୀଙ୍କ ଭଳି ଏମାନଙ୍କୁ ମଧ୍ୟ ରହିବାକୁ ପଡୁଥିଲା। ରାଜନୈତିକ ବନ୍ଦୀମାନେ ତ ଆଉ ଚୋର ତସ୍କର ହତ୍ୟାକାରୀଙ୍କ ସହ ସମାନ ନୁହଁନ୍ତି। ସେମାନଙ୍କ ପାଇଁ ଜେଲ୍‌ରେ ସ୍ୱତନ୍ତ୍ର ସୁବିଧା ପାଇଁ ୧୯୨୯ ଜୁନ ୧୫ଠାରୁ ଭଗତ ସିଂ ଓ ତାଙ୍କର ସାଥୀମାନେ ଅନଶନ ଧର୍ମଘଟ ଆରମ୍ଭ କଲେ। ଅନଶନକାରୀମାନଙ୍କର ଦୃଢ଼ତା ଓ ସେମାନଙ୍କର ସ୍ୱାସ୍ଥ୍ୟଗତ ଦୁରବସ୍ଥାକୁ ନଜରରେ ରଖି ସରକାର ସେପ୍ଟେମ୍ବର ୨ରେ 'ପଞ୍ଜାବ ଜେଲ୍‌ସ୍ ଇନକ୍ୱାଇରୀ କମିଟି' ଗଠନ କଲେ। ସେହି ଦିନ କମିଟିର ସଭ୍ୟମାନେ ଜେଲ୍ ପରିଦର୍ଶନ କରି କେତେକ ସୁବିଧା ସୁପାରିସ୍ କରିବା ପରେ ଅନଶନ ପ୍ରତ୍ୟାହାର ହୋଇଥିଲା। କେବଳ ସାଥୀ ଯତୀନ୍ଦ୍ର ନାଥ ଦାସ ଅନଶନ ଭଙ୍ଗ କରି ନଥିଲେ। ତାଙ୍କର ସ୍ୱାସ୍ଥ୍ୟରେ ଅବନତି ଘଟୁଥିଲା। ତେଣୁ ତାଙ୍କୁ ନିଃସର୍ତ୍ତ ମୁକ୍ତି ନ କରିବା ଯୋଗୁଁ ତଥା ଭଗତ ସିଂ ଓ ବଟୁକେଶ୍ୱର ଦତ୍ତଙ୍କୁ ଲାହୋର ଷଡ଼ଯନ୍ତ୍ର ମାମଲାର ଦଣ୍ଡାଦେଶ ହୋଇ ନଥିବା ଅନ୍ୟ ବନ୍ଦୀଙ୍କ ସହ ବିଚାର-ବିମର୍ଶ ପାଇଁ ସୁଯୋଗ ନ ଦେଉଥିବା ହେତୁ ଦୁଇ ଦିନ ପରେ ଅର୍ଥାତ୍ ସେପ୍ଟେମ୍ବର ୪ରୁ ଭଗତ ସିଂ ଓ ବଟୁକେଶ୍ୱର ଦତ୍ତ ଏବଂ ଅନ୍ୟ ତିନି ଜଣ ପୁଣି ଅନଶନ ଧର୍ମଘଟ ଆରମ୍ଭ କଲେ। କିନ୍ତୁ ସେପ୍ଟେମ୍ବର ୧୩ ଦିନ ଏହି 'ବଙ୍ଗଳାର ବାଘ' ଲଢ଼େଇ ଛାଡ଼ି ଥିବା ଅବସ୍ଥାରେ ଶହୀଦ ହୋଇଗଲେ।

ଏହି ଦୁଃଖଦ ଘଟଣାରେ ମର୍ମାହତ ହୋଇ ସେପ୍ଟେମ୍ବର ୧୪ ଦିନ ଭଗତ ସିଂ ଓ ତାଙ୍କ ସାଥୀମାନେ ଅନଶନ ପରିତ୍ୟାଗ କଲେ ।

'ପଞ୍ଜାବ ଜେଲ୍ ଇନକ୍ୱାଇରୀ କମିଟି'ର ସୁପାରିସ୍ କାର୍ଯ୍ୟକାରୀ କରିବା ଦାବୀରେ ୧୯୩୦ର ଫେବୃଆରୀ ମାସରେ ଭଗତ ସିଂ ଦୁଇ ସପ୍ତାହ ପାଇଁ ପୁଣି ଅନଶନ ଧର୍ମଘଟ କରିଥିଲେ ।

ଲାହୋର ଷଡ଼ଯନ୍ତ୍ର ମାମଲାର ବିଚାର କାଳରେ ଭଗତ ସିଂ ଓ ତାଙ୍କ ସାଥୀମାନେ ଚାହିଁବା ପ୍ରକାରେ ସେମାନଙ୍କ ବିବୃତିର ପ୍ରଚାର ଖୁବ୍ ହେଲା । ସେମାନଙ୍କ ଖ୍ୟାତି ମଧ୍ୟ ବ୍ୟାପିଲା । ସରକାର ବିବ୍ରତ ହେଲେ ଓ ଏପରିକି ସେମାନଙ୍କର ଅବା ସେମାନଙ୍କର ଓକିଲମାନଙ୍କର ବିନା ଉପସ୍ଥିତିରେ ବିଚାର ଚାଳିବାର ବ୍ୟବସ୍ଥା କଲେ । ଏହି ଭାବେ ବିଚାର ଚାଲି ୧୯୩୦ ଅକ୍ଟୋବର ୭ରେ ଦଣ୍ଡାଦେଶ ଶୁଣାଗଲା ଏବଂ ଭଗତ ସିଂ, ସୁଖ ଦେବ ଓ ରାଜଗୁରୁଙ୍କୁ ଫାଶୀଦଣ୍ଡ ମିଳିଲା ।

କେଉଁ ଦିନ ସେମାନଙ୍କୁ ଫାଶୀ ଦିଆ ଯାଆନ୍ତା ହୁଏତ ନିର୍ଦ୍ଦିଷ୍ଟ ଦିନ ଧାର୍ଯ୍ୟ ହୋଇ ନଥିଲା । କିନ୍ତୁ ଗାନ୍ଧିଜୀ ଭାଇସ୍‌ରାୟଙ୍କୁ ପତ୍ର ଲେଖିଥିଲେ ଯେ ଯଦି ସେମାନଙ୍କୁ ଫାଶି ଦେବାଟା ନିଶ୍ଚିତ ତେବେ କରାଚୀ କଂଗ୍ରେସ ପୂର୍ବରୁ ଦେଲେ ଭଲ। ତେଣୁ କରାଚୀ କଂଗ୍ରେସ ପୂର୍ବରୁ ୧୯୩୦ ମାର୍ଚ୍ଚ ୨୩ ସନ୍ଧ୍ୟାରେ ସେମାନଙ୍କୁ ଫାଶୀ ଦିଆଗଲା । ଶବଗୁଡ଼ିକୁ ସେମାନଙ୍କର ପରିବାରକୁ ହସ୍ତାନ୍ତର ନକରି ତରବରିଆ ଭାବେ ରାତ୍ରିର ଅନ୍ଧକାରରେ ସତଲେଜ ନଦୀ କୂଳରେ ଦାହ କରିଦେଲେ ।

ଫାଶୀ ପାଇଲା ବେଳକୁ ଭଗତ ସିଂଙ୍କ ଆୟୁଷ ମାତ୍ର ୨୩ ବର୍ଷ ୫ ମାସ ୨୬ ଦିନ ଥିଲା । ଏହି ସ୍ୱଳ୍ପ ସମୟର ସଂଗ୍ରାମମୟ ଜୀବନ ଭିତରେ ସେ ହାସଲ କରିଥିବା ପ୍ରଗାଢ଼ ଜ୍ଞାନର ପରିମାଣ ତଥା ମଣିଷ ଓ ମଣିଷ ସମାଜର ବିଭିନ୍ନ ସମସ୍ୟା ସମ୍ପର୍କରେ ତାଙ୍କର ପରିପକ୍ୱ ମତାମତକୁ ଅନୁଧ୍ୟାନ କଲେ ଚକିତ ହେବାକୁ ପଡ଼ିଥାଏ ।

ଭାରତ ପୁଣି ସାମ୍ରାଜ୍ୟବାଦୀଙ୍କ ଚାରଣ କ୍ଷେତ୍ରରେ ପରିଣତ ହୋଇ ସାରିଛି । ସାମ୍ରାଜ୍ୟବାଦ ଓ ସେମାନଙ୍କ ଦଲାଲ ଶାସକ ବର୍ଗର ଆକ୍ରମଣରେ ଦେଶର ଶ୍ରମିକ, ଚାଷୀ, ଖଟିଖିଆ ଓ ସାଧାରଣ ମଣିଷଙ୍କ ଜୀବନ ତଳିତଳାନ୍ତ ହେଲାଣି ଓ ସେମାନଙ୍କର ଭବିଷ୍ୟତ ଅନ୍ଧକାରମୟ ହେଲାଣି ।

ସେମାନଙ୍କର ମୁକ୍ତି ପାଇଁ ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମ ପାଇଁ ଆହ୍ୱାନ କରାଗଲାଣି । ଏହି ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମର ପ୍ରତୀକ ଭଗତ ସିଂ ହୁଅନ୍ତୁ ଓ ତାଙ୍କର ଆଦର୍ଶ ଏହି ସଂଗ୍ରାମର ଅସ୍ତ୍ର ହେଉ।

# ଶହୀଦ ଭଗତ ସିଂଙ୍କ ଶହୀଦତ୍ୱ ବ୍ୟର୍ଥ କି ?

**ଭ**ଗତ ସିଂଙ୍କ ଫାଶୀ ପରେ ପରେ ପଞ୍ଜାବର ଜଣେ ବିପ୍ଳବୀ କବି ଲେଖିଥିଲେ, ''ଯେଉଁ ଦିନ ତାଙ୍କୁ ଫାଶୀ ଦିଆଗଲା, ତାଙ୍କର କୋଠରୀରୁ ଲେନିନଙ୍କର ବହିଟିଏ ମିଳିଥିଲା, ଯାହାର ଗୋଟିଏ ପୃଷ୍ଠା ମୋଡ଼ା ହୋଇଥିଲା । ତାଙ୍କର ଶେଷ ଦିନରେ ମୋଡ଼ା ହୋଇଥିବା ପୃଷ୍ଠା ଠାରୁ ପଞ୍ଜାବର ଯୁବା ପିଢ଼ିକୁ ଆଗକୁ ବଢ଼ିବାକୁ ହେବ ।'' ଫାଶୀ ଦେବା ବେଳକୁ ଭଗତ ସିଂ ଆଉ ପଞ୍ଜାବର ହୋଇ ରହି ନଥିଲେ । ସେ ସାରା ଭାରତର ହୋଇ ସାରିଥିଲେ । ସାରା ଭାରତର ଯୁବା ପିଢ଼ିକୁ ସେ ସଂଗ୍ରାମ ପାଇଁ ଆହ୍ୱାନ କରି ସାରିଥିଲେ । ତେଣୁ କବି ସାରା ଭାରତର ଯୁବା ପିଢ଼ିକୁ ଆହ୍ୱାନ ନକରି କାହିଁକି କେବଳ ପଞ୍ଜାବର ଯୁବା ପିଢ଼ିକୁ ଆହ୍ୱାନ କଲେ ବୁଝି ହୁଏନା । ହୁଏତ କବି ଯେଉଁ ଭାଷାରେ ଲେଖୁଥିଲେ ସେହି ଭାଷାର ପରିସରକୁ ତାଙ୍କ ଆହ୍ୱାନର ପରିସର କରି ଦେଲେ — ଭଗତ ସିଂଙ୍କ କର୍ମଜୀବନର ପରିସର କରିଦେଲେ । ଅଥଚ୍ କବିଙ୍କର ଭାଷାର ପରିସର ଅପେକ୍ଷା ଭାବନାର ପରିସର ଅଧିକ ବ୍ୟାପକ । ତେଣୁ ଯେହେତୁ ଭଗତ ସିଂ ସେତେବେଳକୁ ସାରା ଭାରତର ହୋଇ ସାରିଥିଲେଣି, କବିଙ୍କର ଏହି ଆହ୍ୱାନ ସାରା ଭାରତର ଯୁବା ପିଢ଼ିଙ୍କ ପାଇଁ ଉଦିଷ୍ଟ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଫାଶୀଖୁଣ୍ଟରେ ଝୁଲିବାର ଦିନ ଓ ସମୟ ଭଗତ ସିଂ ଜାଣିଥିଲେ । ଦିନଟି ପହଞ୍ଚି ଯାଇଥିଲା ଓ ସମୟ ପାଖେଇ ଆସୁଥିଲା । ଅନ୍ୟ କେହି ହୋଇଥିଲେ ମୃତ୍ୟୁ ଭୟରେ ହୁଏତ ଧର୍ମଗ୍ରନ୍ଥ ପଢୁଥାନ୍ତେ ଅବା ଆସନ୍ନ ମୃତ୍ୟୁକୁ ନେଇ ଚିନ୍ତାକୁଳ ହୋଇ ପଡ଼ନ୍ତେ । କିନ୍ତୁ ଭଗତ ସିଂ ବୁଡ଼ି ରହିଥିଲେ ଲେନିନଙ୍କ *ରାଷ୍ଟ୍ର ଓ ବିପ୍ଳବ* ବହି ଭିତରେ । କୁହାଯାଏ — ଫାଶୀ ଦେବା ପାଇଁ ନେବା ଉଦ୍ଦେଶ୍ୟରେ ଜେଲ୍ କର୍ତ୍ତୃପକ୍ଷଙ୍କ ତରଫରୁ ଓ୍ୱାର୍ଡ଼ରମାନେ ଯେତେବେଳେ ଭଗତ ସିଂକୁ ଡାକିଲେ ସେତେବେଳେ ସେ କହିଥିଲେ, ''ରୁହ ଟିକିଏ, ଜଣେ ବିପ୍ଳବୀ ଆଉ ଜଣେ ବିପ୍ଳବୀଙ୍କ ସହ ଆଳାପ କରୁଛନ୍ତି ।''

ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ବିପ୍ଳବ କଥା ଚିନ୍ତା କରୁଥିଲେ ଓ ଫାଶୀଖୁଣ୍ଟରେ ଝୁଲିବା ପୂର୍ବରୁ **''ଇନ୍‌କିଲାବ୍ ଜିନ୍ଦାବାଦ''**ର ନାରା ଦେଇ ଶହୀଦ ହୋଇ ଯାଇଥିଲେ ।

ଆଜି ତାଙ୍କର ଜନ୍ମ ଶତବାର୍ଷିକୀ ଅବସରରେ ଆମେ ଯେତେବେଳେ ''ଶହୀଦ ଭଗତ ସିଂଙ୍କ ଶହୀଦତ୍ୱ ବ୍ୟର୍ଥ କି ?'' ଭଳି ଏକ ପ୍ରଶ୍ନ ଉଠଉ, ସେତେବେଳେ ଲେନିନ୍‌ଙ୍କ *ରାଷ୍ଟ୍ର ଓ ବିପ୍ଳବ* ବହିର ଯେଉଁ ପୃଷ୍ଠାକୁ ଭଗତ ସିଂ ମୋଡ଼ି ରଖି ଯାଇଥିଲେ ତାଠାରୁ ଆମେ ଆଗକୁ ଯାଇଛେ କି ନାହିଁ ସେ ପ୍ରଶ୍ନ ଉଠିବ, ଆମେ ସେହି ବହି ଆଦୌ ଖୋଲିଛେ କି ନାହିଁ ସେ ପ୍ରଶ୍ନ ଉଠିବ । ଏହି ପ୍ରଶ୍ନଗୁଡ଼ିକର ଯଥାର୍ଥ ଉତ୍ତର ନଦେବା ପର୍ଯ୍ୟନ୍ତ ମୂଳ ପ୍ରଶ୍ନର ଉତ୍ତର ଦେଇ ହେବନ, ଭଗତ ସିଂଙ୍କର ଶହୀଦତ୍ୱର ସମୁଚିତ ମୂଲ୍ୟାୟନ କରି ହେବନି ।

ଭଗତ ସିଂ ଶହୀଦ ହୋଇ ୭୫ ବର୍ଷ ହେଲାଣି । ୭୫ ବର୍ଷ ପୂର୍ବେ ସଂସାର ଯାହା ଥିଲା ଆଜି ତାହା ନାହିଁ । ଭଗତ ସିଂ ଭାରତକୁ ଯେମିତି ଦେଖିଥିଲେ ଆଜି ଭାରତ ସେମିତି ନାହିଁ । କିନ୍ତୁ ତାଙ୍କର ସ୍ୱପ୍ନ ଯେମିତି ସେମିତି ରହି ଯାଇଛି । କେବଳ ଏହି ସ୍ଥିତିକୁ ବିଚାରକୁ ନେଇ ମୂଳ ପ୍ରଶ୍ନର ଉତ୍ତର ଦେଲେ ତ ଉତ୍ତର ମିଳିବ: ଭଗତ ସିଂଙ୍କ ଶହୀଦତ୍ୱ ବ୍ୟର୍ଥ । ତେଣୁ ଅନ୍ୟାନ୍ୟ ଆନୁସଙ୍ଗିକ ପ୍ରଶ୍ନର ଉତ୍ତର ଭିତ୍ତିରେ ହିଁ ମୂଳ ପ୍ରଶ୍ନର ଉତ୍ତର ଖୋଜିବାକୁ ହେବ ।

ଉତ୍ତର ଖୋଜିବା ପୂର୍ବରୁ ଆମେ ବିଚାର କରିବା ଆଉ ଏକ ଘଟଣା । ୧୯୨୬ ମସିହା ଫେବୃଆରୀ ୨୭ ତାରିଖଟି ଥିଲା ହୋଲି ପର୍ବର ଦିନ । ସେହି ଦିନ ବାଭର ଅକାଳୀ ଦଳର ଛଅ ଜଣ ବୀର — ଶ୍ରୀ କିଷନ୍ ସିଂଜୀ ଗଡ଼ଗଜ୍ଜା, ଶ୍ରୀ ଶାନ୍ତ ସିଂଜୀ, ଶ୍ରୀ ଦିଲିପ୍ ସିଂଜୀ, ଶ୍ରୀ ନନ୍ଦ ସିଂଜୀ, ଶ୍ରୀ କରମ ସିଂଜୀ ଓ ଶ୍ରୀ ଧରମ ସିଂଜୀ — ଫାଶୀ ପାଇଥିଲେ । ଲାହୋର ସହରର ସମସ୍ତେ ହୋଲି ମଉଜରେ ମଶ୍‌ଗୁଲ୍ ଥିଲେ । ହୋଲି ପର୍ବର ଭିଡ଼ ଭିତରେ ମାତ୍ର ଅଳ୍ପ କେଇ ଜଣ ନିକଟ ସମ୍ପର୍କୀୟ ଶବଗୁଡ଼ିକୁ ନେଇ ଯାଉଥିଲେ ଶ୍ମଶାନକୁ ଦାହ କରିବା ପାଇଁ । ସହରର ଲୋକ ଏହି ଘଟଣାଟିକୁ ନଜରକୁ ନେଲେନି । ସେମାନେ ଥିଲେ ସମ୍ପୂର୍ଣ୍ଣ ଉଦାସୀନ । ଲୋକଙ୍କର ଏପରି ବ୍ୟବହାର ଭଗତ ସିଂଙ୍କ ମନରେ ଭାରି ଆଘାତ ଦେଇଥିଲା । ସେ ଲେଖିଥିଲେ,

> ''ଓଃ! କି ଭୟଙ୍କର ଉଦାସୀନତା! ଯଦି ସେମାନେ ବିପଥଗାମୀ ହୋଇଥିଲେ, ଯଦି ସେମାନେ ଉନ୍ମାଦଗ୍ରସ୍ତ ହୋଇଥିଲେ, ହୋଇଥାଇ ପାରନ୍ତି । ସେମାନେ ନିର୍ଭୟୀ ଦେଶଭକ୍ତ ଥିଲେ । ସେମାନେ ଯାହା ବି କଲେ, ଏହି ଦୁଃଖୀ ଦେଶ ପାଇଁ କଲେ । ସେମାନେ ଅନ୍ୟାୟକୁ ସହ୍ୟ କରି ପାରିଲେନି । ସେମାନେ ଏହି ପତିତ ଦେଶକୁ ଦେଖି ପାରିଲେନି । ଗରୀବ, ଦୁର୍ବଳ ମଣିଷ ଉପରେ ହେଉଥିବା ଅତ୍ୟାଚାର ସେମାନଙ୍କ ପକ୍ଷେ ଅସହ୍ୟ ହେଲା । ଜନଗଣଙ୍କ ପ୍ରତି

ହେଉଥିବା ଶୋଷଣ ସେମାନେ ସହ୍ୟ କରି ପାରିଲେନି । ତାହାର ବିରୋଧ କଲେ । ପ୍ରତିବିଧାନ କରିବା ପାଇଁ ମଇଦାନକୁ ଡେଇଁ ପଡ଼ିଲେ । ସେମାନଙ୍କ ପାଖେ ସମ୍ପୂର୍ଣ୍ଣ ଜୀବନଟି ଥିଲା । ଓଃ! ସେମାନଙ୍କର ଉତ୍ସର୍ଗୀକୃତ କର୍ମ ପାଇଁ କି ଭୟଙ୍କର ମୂଲ୍ୟ ଦେବାକୁ ପଡ଼ିଲା !'' ଏପରି ବିରତ୍ୱ, ଦେଶଭକ୍ତି ତଥା ଆସକ୍ତିର ପ୍ରଶଂସା ଆମର ଶତ୍ରୁ ଇଂରେଜମାନେ କରୁଥିଲା ବେଳେ ''ଆମେ ଭୀରୁମାନେ, ଦୁଃଖ ମଣିଷମାନେ ଟିକିଏ ବି ସାହସ କରୁନା ଦୁଃଖ କରିବା ପାଇଁ, ମୁହୂର୍ତ୍ତକ ପାଇଁ ଆନନ୍ଦ ଉତ୍ସବ ବନ୍ଦ କରିବା ପାଇଁ । ଏହି କଥା କେତେ ନିରୁତ୍ସାହଜନକ !''[୧]

ଯେଉଁ ଲେଖାଟିରେ ଭଗତ ସିଂ ଏହି କଥା କହିଛନ୍ତି ସେଥିରେ ସେ କେବଳ ଏହି ଛଅ ଜଣ ଶହୀଦଙ୍କ କଥା କହି ନାହାନ୍ତି, କହିଛନ୍ତି ସେହି ଆନ୍ଦୋଳନର ଆହୁରି ଅନେକ ଶହୀଦଙ୍କ କଥା ଓ ଯେଉଁ ଲୋକଙ୍କ ପାଇଁ ସେମାନେ ଜୀବନ ଉତ୍ସର୍ଗ କରିଦେଲେ ସେହି ଲୋକଙ୍କ ଉଦାସୀନତା କଥା ।

କିନ୍ତୁ ଭଗତ ସିଂ, ରାଜଗୁରୁ ଓ ସୁଖଦେବଙ୍କ କ୍ଷେତ୍ରରେ ସେହି ଭଳିଆ ଉଦାସୀନତା ନଥିଲା । ସେମାନଙ୍କ ବିଚାରଣା ବେଳେ ସେମାନଙ୍କର ଭବିଷ୍ୟତ ନେଇ ସାରା ଭାରତର ଲୋକେ ଚିନ୍ତିତ ଥିଲେ । ଏପରିକି ସେମାନଙ୍କ ପାଇଁ ଏକ ଡିଫେନ୍ସ୍ କମିଟି ମଧ୍ୟ ଗଠିତ ହୋଇଥିଲା । ଡିଫେନ୍ସ୍ କମିଟି ସେମାନଙ୍କୁ ଅପରାଧ ମୁକ୍ତ କରିବା ପାଇଁ ଚେଷ୍ଟା କରିଥିଲା । ତାସତ୍ତ୍ୱେ ବି ସେମାନଙ୍କୁ ମୃତ୍ୟୁଦଣ୍ଡ ମିଳିଲା । ମୃତ୍ୟୁଦଣ୍ଡର ଦିନ ପାଖେଇ ଆସୁଥିଲା । ତାକୁ ଏଡ଼େଇବା ପାଇଁ ଡିଫେନ୍ସ୍ କମିଟି କିଛି ସମୟ ଚାହୁଁଥିଲା । ତେଣୁ ଏକ ମର୍ସି ପିଟିସନ୍ ପକେଇବା ପାଇଁ ନିଷ୍ପତ୍ତି କରିଥିଲା ଓ ଭଗତ ସିଂଙ୍କୁ ସେଇ କଥାରେ ରାଜି ହେବା ପାଇଁ ପ୍ରବର୍ତ୍ତାଇ ଥିଲା । କିନ୍ତୁ ଭଗତ ସିଂ, ରାଜଗୁରୁ ଓ ସୁଖଦେବ ସେପରି ଦୟାଭିକ୍ଷା କରିବା ପାଇଁ ପ୍ରସ୍ତୁତ ନଥିଲେ । ଏହି ଆତ୍ମବଳୀର ଅନ୍ତରାଳରେ ସେମାନଙ୍କର ଉଦ୍ଦେଶ୍ୟ ଥିଲା ସେମାନଙ୍କର ଆଦର୍ଶ ସମ୍ପର୍କରେ ଭାରତର ଜନମାନସକୁ ଜାଗ୍ରତ କରିବା । ସେହି ଉଦ୍ଦେଶ୍ୟକୁ ବାସ୍ତବ ରୂପ ଦେବା ପାଇଁ ତଥା ଡିଫେନ୍ସ୍ କମିଟିକୁ ଅନ୍ୟ କୌଣସି ବିକଳ୍ପ ପଦକ୍ଷେପ ନେବା ପାଇଁ ସୁଯୋଗ ନଦେବା ଅଭିପ୍ରାୟରେ ସେମାନେ ଗଭର୍ଣ୍ଣରଙ୍କୁ ଏକ ଚିଠି ଲେଖି ଏହା ଦାବୀ କରିଥିଲେ ଯେ ଯଦି ସରକାରୀ ଦୃଷ୍ଟିରେ ସେମାନେ ଯୁଦ୍ଧବନ୍ଦୀ ତେବେ ଯୁଦ୍ଧବନ୍ଦୀଙ୍କୁ ଯେପରି ମୃତ୍ୟୁଦଣ୍ଡ ଦିଆଯାଇ ଥାଏ ଠିକ୍ ସେପରି ସେମାନଙ୍କୁ ଫାଶୀ ନଦେଇ ଗୁଳି କରି ମରାଯାଉ ।

ସାରା ଦେଶ ଭଗତ ସିଂ, ରାଜଗୁରୁ ଓ ସୁଖଦେବଙ୍କ ପାଇଁ ଚିନ୍ତିତ ଥିଲେ । ଅନ୍ତତଃ ପକ୍ଷେ ସେମାନଙ୍କର ଦଣ୍ଡକୁ କୋହଳ କରିବା ପାଇଁ ସବୁମତେ ଚେଷ୍ଟା ଚାଲିଥିଲା । ଅଥଚ ରାଜନୈତିକ ବନ୍ଦୀମାନଙ୍କ ମୁକ୍ତି ବିଷୟକୁ ଗାନ୍ଧିଜୀ ପ୍ରାଥମିକତା ଦେଇ ନଥିଲେ ।

''ଡିସେମ୍ବର ୨୩, ୧୯୨୯ ଦିନ ଭାଇସରାୟଙ୍କ ସହ ସାକ୍ଷାତକାର ବେଳେ ତାଙ୍କ ସହ ବନ୍ଦୀମାନଙ୍କର ମୁକ୍ତି ବିଷୟ ଆଲୋଚନା କରିବା ପାଇଁ ଗାନ୍ଧିଜୀ ମନା କରି ଦେଇଥିଲେ ।

ବନ୍ଦୀମାନେ ଜେଲ୍‌ରେ ଆଉ କିଛି କାଳ ଅପେକ୍ଷା କରି ପାରିବେ, ସେ କହିଥିଲେ ଓ ଡୋମିନିଅନ୍ ଷ୍ଟେଟସ୍ ଉପରେ ଦୃଷ୍ଟି ନିବିଦ୍ଧ କରିଥିଲେ ।''[୨]

ଅବଶ୍ୟ ପରେ ଗାନ୍ଧୀଜୀ ଓ ଇର୍‌ଉଇନ୍‌ଙ୍କ ମଧ୍ୟରେ ଦଣ୍ଡ କୋହଳ କରିବା ବିଷୟ ନେଇ ଆଲୋଚନା ହୋଇଥିଲା । ସେହି ଆଲୋଚନାରେ

> ''ଭାଇସ୍‌ରାୟ ସଂଯମତା ରକ୍ଷା କରି କଥା କହୁଥିଲେ । ଏଇ ବିଷୟରେ ପଞ୍ଜାବ ସରକାରଙ୍କ ଉପରେ ସେ ତାଙ୍କ ପ୍ରଭାବର ଉପଯୋଗ କରିବେ ବୋଲି ଗାନ୍ଧୀଙ୍କୁ ଆଶ୍ୱସ୍ତି ଦେବା ଛଡ଼ା କୌଣସି ପ୍ରକାର ପ୍ରତିଶ୍ରୁତି କେବେ ଦେଇ ନଥିଲେ । ତାଙ୍କର ନିଜର ଦଣ୍ଡ କୋହଳ କରିବା ଅଧିକାର ଥିଲା, କିନ୍ତୁ ରାଜନୈତିକ କାରଣରୁ ସେପରି ଅଧିକାରର ସାହାଯ୍ୟ ନେଇପାରୁ ନଥିଲେ ଅବା ପ୍ରୟୋଗ କରିପାରୁ ନଥିଲେ । ଅପର ପକ୍ଷରେ, ସେହି ରାଜନୈତିକ କାରଣ ହିଁ ଏହି ବିଷୟ ନେଇ ପଞ୍ଜାବ ସରକାରଙ୍କ କୋମଳ ହେବା ପଥରୋଧ କରିଥିଲା ।''[୩]

ବ୍ରିଟିଶ୍ ସାମ୍ରାଜ୍ୟବାଦୀ ସରକାର ରାଜନୈତିକ କାରଣରୁ ସେମାନଙ୍କର ଦଣ୍ଡ କୋହଳ କରିବା ପାଇଁ ଅକ୍ଷମ ଥିଲେ । ଅଥଚ ଆମ ନେତାମାନେ ସେମାନଙ୍କର ମୁକ୍ତିକୁ ହିଁ ଏକ ରାଜନୈତିକ ପ୍ରଶ୍ନ ରୂପେ ଉପସ୍ଥାପନ କରିବା ପାଇଁ ଅମଙ୍ଗ ଥିଲେ ।

## ସନ୍ତ୍ରାସବାଦୀ?

ସେତେବେଳେ ବ୍ରିଟିଶ୍ ସାମ୍ରାଜ୍ୟବାଦୀଙ୍କ କବଳରୁ ଭାରତର ମୁକ୍ତି ସମସ୍ତଙ୍କର କାମ୍ୟ ଥିଲା । ଭାରତକୁ ସ୍ୱାଧୀନ କରିବା ପାଇଁ କିଏ ହିଂସାର ବାଟ ଧରୁଥିଲା ତ କିଏ ଅହିଂସାର ବାଟ । ହିଂସା ପଥର ଯାତ୍ରୀ ହୁଅନ୍ତୁ ବା ଅହିଂସା ପଥର, ସମସ୍ତେ ଥିଲେ ଦେଶପ୍ରେମୀ । ଏହି ଦେଶପ୍ରେମ ଯୋଗୁଁ ହିଁ ସେମାନେ ବିଭିନ୍ନ ଧରଣର ଜେଲ୍ ଦଣ୍ଡ ଭୋଗୁଥିଲେ । କିନ୍ତୁ ଗାନ୍ଧିଜୀଙ୍କ ଦୃଷ୍ଟିରେ ସବୁ ଦେଶପ୍ରେମୀ ସମାନ ନଥିଲେ । ତାଙ୍କର ଦରଦ ଥିଲା କେବଳ ଅହିଂସା ପଥର ଯାତ୍ରୀଙ୍କ ପ୍ରତି । ଅଥଚ ଗାନ୍ଧିଜୀ ନିଜେ ବୁଝିଥିଲେ ଯେ ବ୍ରିଟିଶ୍ ଜାତିଟା କେବଳ ବଳର ଭାଷା ବୁଝେ । ସେ ଲେଖିଛନ୍ତି,

> ''ମୁଁ ରୋଟି ମାଗିଥିଲି, କିନ୍ତୁ ତା ବଦଳରେ ପାଇଲି ପଥର । ଇଂରେଜ ଜାତିଟା କେବଳ ବଳପ୍ରୟୋଗକୁ ହିଁ ଅନୁଭବ କରେ, ତାର ଉତ୍ତର ଦିଏ, ତେଣୁ ଭାଇସ୍‌ରାୟଙ୍କ ଉତ୍ତର ଦ୍ୱାରା ମୁଁ ଆଶ୍ଚର୍ଯ୍ୟ ହେଉନି ।''[୪]

ଯଦି ତାହା ସତ ତେବେ ଯେଉଁମାନେ ହିଂସାର ପଥ ଧରୁଥିଲେ ସେମାନେ ଭୁଲ କରୁଥିଲେ ବୋଲି କହି ହେବନି । କାରଣ ତାହା କେବଳ ନିଜନିଜର ପାରିବାରିକ, ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ପରିବେଶ ତଥା ଅଭିଜ୍ଞତାର ପ୍ରଭାବର କଥା ।

ଗାନ୍ଧିଜୀଙ୍କର ପାରିବାରିକ, ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ପରିବେଶ ତଥା ଅଭିଜ୍ଞତାର ପ୍ରଭାବ ତାଙ୍କୁ ଅହିଂସା ବାଟରେ ନେଲା । ଭଗତ ସିଂ ଓ ତାଙ୍କର ସାଥିଗଣ ତଥା ଅନ୍ୟ ବିପ୍ଳବୀମାନଙ୍କର ପାରିବାରିକ, ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ପରିବେଶ ତଥା ଅଭିଜ୍ଞତାର ପ୍ରଭାବ ସେମାନଙ୍କୁ ହିଂସା ପଥର ଯାତ୍ରୀ କଲା । ହିଂସା ବାଟରେ ଯାଆନ୍ତୁ ବା ଅହିଂସା ବାଟରେ, ସମସ୍ତେ ଦେଶ ପାଇଁ ଲଢୁଥିଲେ, ଦେଶପ୍ରେମୀ ଥିଲେ । ମତ ପାର୍ଥକ୍ୟ ତ ରହିବ । ଗାନ୍ଧିଜୀ ଓ କଂଗ୍ରେସ ମଧ୍ୟରେ ତ ପୁଣି ମତ ପାର୍ଥକ୍ୟ ଥିଲା । ସାମାଜିକ ବାସନ୍ଦ ସମ୍ପର୍କରେ ଗାନ୍ଧିଜୀଙ୍କ ମତ ଦେଖନ୍ତୁ ।

> "ନଭସାରୀ ଠାରେ ସରକାରୀ କର୍ମଚାରୀଙ୍କ ପ୍ରତି ସାମାଜିକ ବାସନ୍ଦ ବିରୁଦ୍ଧରେ ସେ ଜନଗଣଙ୍କୁ ସାବଧାନ କରି ଦେଇଥିଲେ । ଗୁଜରାଟର କଇରା ଜିଲ୍ଲା ଯୁଦ୍ଧକ୍ଷେତ୍ର ହୋଇଗଲା ଓ ଗାନ୍ଧି, *ନବଜୀବନ* ରେ ପ୍ରକାଶିତ ଏକ ଲେଖାରେ ଲେଖିଥିଲେ, '... କଇରା ଜିଲ୍ଲାର ଲୋକମାନେ ସାବଧାନ ହେଇ ବାସନ୍ଦକୁ କାର୍ଯ୍ୟକାରୀ କରିବା ଉଚିତ । ଉଦାହରଣ ସ୍ୱରୂପ, ମୁଁ ସ୍ୱୀକାର କରିଛି ଯେ, ଗ୍ରାମ୍ୟ ଅଫିସରମାନଙ୍କ ପ୍ରତି ବାସନ୍ଦ କେବଳ ସେମାନଙ୍କର କାର୍ଯ୍ୟକ୍ଷେତ୍ରକୁ ନେଇ ହେବା ଉଚିତ । ସେମାନଙ୍କର ଆଦେଶ ପାଳନ କରାଯିବା ଉଚିତ ନୁହେଁ, ଅଥଚ ସେମାନେ ସେମାନଙ୍କର ଖାଦ୍ୟସାମଗ୍ରୀ ପାଇବାଟା ବନ୍ଦ ହେବା ଉଚିତ ନୁହେଁ । ସେମାନଙ୍କୁ ସେମାନଙ୍କ ଘରୁ ବିତାଡ଼ନ କରାଯିବା ଉଚିତ ନୁହେଁ । ଆମେମାନେ ଯଦି ଏହା କରିବା ପାଇଁ ସକ୍ଷମ ନୋହୁଁ, ତେବେ ବାସନ୍ଦକୁ ହିଁ ପରିତ୍ୟାଗ କରିବା ଉଚିତ ।'"[୫]

ଦେଖନ୍ତୁ ସେ ସମ୍ପର୍କରେ କଂଗ୍ରେସର କାର୍ଯ୍ୟକାରୀ କମିଟିର ୨୭ ଜୁନ୍‌ରେ ଆଲାହାବାଦ ଠାରେ ହୋଇଥିବା ବୈଠକର ୩ ନମ୍ବର ନିର୍ଦ୍ଧାରଣ କଣ କହୁଛି:

> "ଜାତୀୟ ଆନ୍ଦୋଳନକୁ ଦମନ କରିବା ଉଦ୍ଦେଶ୍ୟରେ ଜନସାଧାରଣଙ୍କ ପ୍ରତି କରା ଯାଇଥିବା ନୃଶଂସ କାର୍ଯ୍ୟରେ ଯେଉଁ ସମସ୍ତ ସରକାରୀ କର୍ମଚାରୀ ଓ ଅନ୍ୟମାନେ ପ୍ରତ୍ୟକ୍ଷ ରୂପେ ଅଂଶଗ୍ରହଣ କରିଛନ୍ତି ସେମାନଙ୍କ ବିରୁଦ୍ଧରେ ସଂଗଠିତ ହେବା ପାଇଁ ଓ ସାମାଜିକ ବାସନ୍ଦକୁ କଡ଼ାକଡ଼ି ଭାବେ ଲାଗୁ କରିବା ପାଇଁ ଏହି କମିଟି ଜନସାଧାରଣଙ୍କୁ ଆହ୍ୱାନ କରେ ।"[୬]

ସାମାନ୍ୟ ସାମାଜିକ ବାସନ୍ଦ ବିଷୟକୁ ନେଇ ଗାନ୍ଧିଜୀଙ୍କ ବ୍ୟକ୍ତିଗତ ମତ ଓ ତାଙ୍କରି ନେତୃତ୍ୱରେ ପରିଚାଳିତ କଂଗ୍ରେସର କାର୍ଯ୍ୟକାରୀ କମିଟିର ସାମୁହିକ ମତ ଯଦି ଅଲଗା ଅଲଗା ହୋଇ ପାରେ, ତେବେ ଜାତୀୟ ଆନ୍ଦୋଳନର ଅନ୍ତିମ ଲକ୍ଷ୍ୟ ଓ ସେହି ଲକ୍ଷ୍ୟ ହାସଲ କରିବା ପାଇଁ ଗ୍ରହଣଯୋଗ୍ୟ ସାଧନକୁ ନେଇ ମତ ପାର୍ଥକ୍ୟ ହେବାଟା ଅତି ସାଧାରଣ କଥା । ଏହି ମତ ପାର୍ଥକ୍ୟ ଭିତ୍ତିରେ କାହାକୁ ଦେଶପ୍ରେମୀ କହିବା ଓ ଆଉ କାହାକୁ ଦେଶପ୍ରେମୀ କହିବାନି ସେ ପ୍ରଶ୍ନ ଉଠେନା । ସମସ୍ତେ ଦେଶପ୍ରେମୀ । ଯଦି ସମସ୍ତେ ଦେଶପ୍ରେମୀ ତେବେ ଆମ ଦୃଷ୍ଟିରେ ସମସ୍ତେ ସମାନ ଓ ସମସ୍ତଙ୍କର ଅଧିକାର ମଧ୍ୟ ସମାନ । କିନ୍ତୁ ଗାନ୍ଧିଜୀଙ୍କ ଦୃଷ୍ଟିରେ ତାହା ନୁହେଁ ।

ଅସହଯୋଗ ଆନ୍ଦୋଳନ ଆରମ୍ଭ କରିବା ପୂର୍ବରୁ ଗାନ୍ଧିଜୀ ଭାଇସ୍‌ରାୟଙ୍କୁ ଯେଉଁ ଦାବୀପତ୍ର ଦେଇଥିଲେ, ତହିଁର ୯ ନମ୍ବର ଦାବୀଟି ଥିଲା ରାଜନୈତିକ ବନ୍ଦୀଙ୍କ ମୁକ୍ତି ସଂକ୍ରାନ୍ତରେ । ସେଥିରେ ସେ ସମସ୍ତ ରାଜନୈତିକ ବନ୍ଦୀଙ୍କ ମୁକ୍ତି ଦାବୀ କରି ନଥିଲେ । ଯେଉଁ ରାଜନୈତିକ ବନ୍ଦୀମାନେ ହତ୍ୟା ବା ହତ୍ୟା ଉଦ୍ୟମ ଦୋଷରେ ଦଣ୍ଡିତ ହୋଇଥିଲେ ସେମାନଙ୍କ ଛଡ଼ା ଅନ୍ୟ ରାଜନୈତିକ ବନ୍ଦୀମାନଙ୍କର ମୁକ୍ତି ଦାବୀ କରିଥିଲେ ।[୭] ଆରମ୍ଭରୁ ହିଁ ଗାନ୍ଧିଜୀ ହିଂସା ପଥର ରାଜନୈତିକ ବନ୍ଦୀମାନଙ୍କ ମୁକ୍ତି ସପକ୍ଷରେ ନଥିଲେ । ତେଣୁ ଗାନ୍ଧି-ଇରୱିନ ଚୁକ୍ତିରେ ବନ୍ଦୀମାନଙ୍କ ମଧ୍ୟରୁ କେବଳ ଅହିଂସା ପଥର ଯାତ୍ରୀଙ୍କୁ ମୁକ୍ତ କରିବା ବ୍ୟବସ୍ଥା ରହିଲା । ହିଂସା ପଥର ଯାତ୍ରୀ ସେ ସୁଯୋଗରୁ ବଞ୍ଚିତ ହେଲେ ।[୮]

ସମଗ୍ର ଜାତିର ବ୍ୟଗ୍ରତା ସତ୍ୱେ ଭଗତ ସିଂ ଓ ତାଙ୍କ ସାଥୀମାନେ ମଧ୍ୟ କୌଣସି ପ୍ରକାର ଛାଡ଼ ପାଇଲେନି ।

ସେମାନଙ୍କର ମୃତ୍ୟୁଦଣ୍ଡକୁ କାର୍ଯ୍ୟକାରୀ କରିବାରେ ଆଉ କିଛି ଦିନ ଡେରି ହୁଅନ୍ତା କି ନହୁଅନ୍ତା, ଭାଇସ୍‌ରାୟଙ୍କୁ ଗାନ୍ଧିଜୀଙ୍କ ପତ୍ର ଓଲଟି ତାକୁ ତ୍ୱରାନ୍ୱିତ କଲା । ପଟ୍ଟାଭି ସୀତାରାମାୟା ଥିଲେ ସେହି ସମୟର ତୁଙ୍ଗ କଂଗ୍ରେସ ନେତାମାନଙ୍କ ମଧ୍ୟରୁ ଜଣେ । ସେ ଯେତେବେଳେ କଂଗ୍ରେସର ସଭାପତି ପଦ ପାଇଁ ସୁଭାଷ ଚନ୍ଦ୍ର ବୋଷଙ୍କ ସହ ପ୍ରତିଦ୍ୱନ୍ଦିତା କରିଥିଲେ, କୁହାଯାଏ — ସେତେବେଳେ ଗାନ୍ଧିଜୀ କହିଥିଲେ, 'ପଟ୍ଟାଭି ସୀତାରାମାୟା ହାରିଲେ, ମୁଁ ହାରିଲି ।' ତେଣୁ ସେ ଗାନ୍ଧିଜୀଙ୍କର ଅତି ଆପଣାର ଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ସେ ଇଂରାଜିରେ *ଭାରତୀୟ ଜାତୀୟ କଂଗ୍ରେସର ଇତିହାସ* ବହି ଖଣ୍ଡିଏ ଲେଖିଥିଲେ ଯାହା କଂଗ୍ରେସର କାର୍ଯ୍ୟକାରୀ କମିଟି ଦ୍ୱାରା ମଞ୍ଜୁରୀ ପାଇ ୧୯୩୫ରେ ପ୍ରକାଶିତ ହୋଇଥିଲା । ସେଥିରେ ସେ ଲେଖିଛନ୍ତି,

> " ... ଏହି କଥାରେ ସାହାଯ୍ୟ କରିବା ପାଇଁ ଲର୍ଡ଼ ଇରୱିନ୍ ଅକ୍ଷମ ଥିଲେ, କିନ୍ତୁ କରାଚୀ କଂଗ୍ରେସ ପର ପର୍ଯ୍ୟନ୍ତ ଫାଶୀଦଣ୍ଡକୁ ସ୍ଥଗିତ ରଖିବା ପାଇଁ ନିଷ୍ପତ୍ତି କରେଇବା ଦାୟିତ୍ୱ ସେ ବହନ କଲେ । ମାର୍ଚ୍ଚ ମାସର ଶେଷ ସପ୍ତାହରେ କରାଚୀ ଅଧିବେଶନ ହେବାର ଥିଲା, କିନ୍ତୁ ଗାନ୍ଧି ନିଜେ ନିର୍ଦ୍ଦିଷ୍ଟ ଭାବେ ଭାଇସ୍‌ରାୟଙ୍କୁ ଜଣେଇଲେ ଯେ ବାଳକମାନଙ୍କୁ ଯଦି ଫାଶୀ ଦେବାଟା ନିଶ୍ଚିତ, ତେବେ କଂଗ୍ରେସ (କରାଚି) ବୈଠକ ପରେ ଦେବା ଅପେକ୍ଷା ପୂର୍ବରୁ ଦେଲେ ଭଲ ।"[୯]

ଗାନ୍ଧିଜୀ ଯଦି ଚାହିଁଥାନ୍ତେ ତେବେ ସେ ସେମାନଙ୍କୁ ମୁକୁଳେଇ ପାରିଥାନ୍ତେ । କିନ୍ତୁ ସେ ତା କଲେନି । ୧୯୩୧ ମସିହା ଫେବୃଆରୀ ଓ ମାର୍ଚ୍ଚ ମାସରେ ତତ୍‌କାଳୀନ ଭାଇସ୍‌ରାୟ ଲର୍ଡ଼ ଇର୍‌ୱିନଙ୍କ ସହ ତାଙ୍କର କଥାବାର୍ତ୍ତା ବେଳେ ଏହି କଥା ଉଠେଇ ଏହାକୁ ଆସନ୍ନ ରାଜିନାମାର ଏକ ସର୍ତ୍ତ ହିସାବରେ ଗାନ୍ଧିଜୀ ଉପସ୍ଥାପନ କରି

ପାରିଥାନ୍ତେ । ଏହାକୁ ଏକ ରାଜନୈତିକ ପ୍ରଶ୍ନ କରି ପାରିଥାନ୍ତେ । କିନ୍ତୁ ସେ ତାହା ମଧ୍ୟ କଲେନି । ଗାନ୍ଧିଜୀ *ୟଙ୍ଗ ଇଣ୍ଡିଆ* ରେ ଲେଖିଥିଲେ,

> ''ଦଣ୍ଡହ୍ରାସକୁ ରାଜିନାମାର ଏକ ସର୍ତ୍ତ ହିସାବରେ ମୁଁ ରଖି ପାରିଥାନ୍ତି । ତାହା କରାଯାଇ ପାରିଲାନି । ... ଦଣ୍ଡହ୍ରାସକୁ ସନ୍ଧିର ପୂର୍ବ ସର୍ତ୍ତ ନ କରିବା ପାଇଁ ମୋ ସହିତ କାର୍ଯ୍ୟକାରୀ କମିଟି ସହମତ ହୋଇଥିଲେ । ତେଣୁ ମୁଁ ତାର କେବଳ ସୂଚନା ଦେଇଥିଲି ।''[୧୦]

ଗାନ୍ଧିଜୀଙ୍କ ଭାଷାକୁ ଅନୁଧ୍ୟାନ କରନ୍ତୁ, ''ମୋ ସହିତ କାର୍ଯ୍ୟକାରୀ କମିଟି ସହମତ ହୋଇଥିଲେ'' ("The Working Committee had agreed with me") । ତାଙ୍କର ଅନିଚ୍ଛା ସତ୍ତ୍ୱେ କାର୍ଯ୍ୟକାରୀ କମିଟିର ନିଷ୍ପତ୍ତିକୁ ସେ କାର୍ଯ୍ୟକାରୀ କରୁ ନଥିଲେ । ଓଲଟି ତାଙ୍କର ନିଷ୍ପତ୍ତି ସହ କାର୍ଯ୍ୟକାରୀ କମିଟି ସହମତ ହୋଇଥିଲେ । ଏହି ପରିସ୍ଥିତିରେ ଗାନ୍ଧିଜୀଙ୍କ ଭୂମିକା ସମ୍ପର୍କରେ ମନ୍ତବ୍ୟ ଦେଇ ଭାରତର ଜାତୀୟ ବାହିନୀର ଜେନେରାଲ୍ ମୋହନ ସିଂ ଲେଖିଛନ୍ତି,

> ''ସେ (ମହାତ୍ମା ଗାନ୍ଧି) ଭଗତ ସିଂଙ୍କୁ ଫାଶୀଦଣ୍ଡରୁ ରକ୍ଷା କରି ପାରିଥାନ୍ତେ, କିନ୍ତୁ ସେ ତାହା ଜାଣିଶୁଣି କଲେନି । ଜଣେ ଜାତୀୟ ବୀରର ମୁକ୍ତିର ପ୍ରଶ୍ନକୁ ସେ ଏକ ଜାତୀୟ ପ୍ରଶ୍ନ କରି ପାରିଥାନ୍ତେ । ... ସମଗ୍ର ଜାତିଟା ବଳିଦାନ ଦେବା ପାଇଁ ପ୍ରସ୍ତୁତ ହୋଇ ରହିଥିଲା । ଏଭଳି ଏକ ପଦକ୍ଷେପ ଦ୍ୱାରା ସେ (ମହାତ୍ମା ଗାନ୍ଧି) ଭଗତ ସିଂ ଓ ତାଙ୍କର ସହକର୍ମୀମାନଙ୍କୁ ମୃତ୍ୟୁମୁଖରୁ ରକ୍ଷା କରି ପାରିଥାନ୍ତେ । ... କିନ୍ତୁ ସେ ତାଙ୍କର ଅହିଂସା ଦର୍ଶନର ଅମୂଳକ ମର୍ଯ୍ୟାଦାଠୁଁ ଉପରକୁ ଉଠି ପାରିଲେନି, କାରଣ ଭଗତ ସିଂଙ୍କ ମୁକ୍ତି ଦ୍ୱାରା ବିପ୍ଳବୀ ବୀରମାନଙ୍କ ଦଳ ଆହୁରି ବଳିୟାନ ହୁଅନ୍ତା, ଯେଉଁ କଥାକୁ ମହାତ୍ମା ଗାନ୍ଧି ସହ୍ୟ କରିପାରୁ ନଥିଲେ ।''[୧୧]

ମଣିଷ ସ୍ୱାଭାବିକ ତଥା ଆସନ୍ନ ମୃତ୍ୟୁକୁ ମଧ୍ୟ ଆଉ କିଛି ଦିନ ଆଡ଼େଇ ଦେବା ପାଇଁ ସବୁମନ୍ତେ ଚେଷ୍ଟା କରିଥାଏ । ଭଗତ ସିଂ ଓ ସାଥୀମାନଙ୍କ ସାମନାରେ ତ ସାରା ଜୀବନଟା ପଡ଼ିଥିଲା । ସେମାନଙ୍କର ଫାଶୀଦଣ୍ଡକୁ କରାଚି କଂଗ୍ରେସ ପର ପର୍ଯ୍ୟନ୍ତ ସ୍ଥଗିତ କରିବା ବ୍ୟବସ୍ଥାର ଦାୟିତ୍ୱ ଇରୱିନ୍ ନେଇଥିଲେ । ତାହା ଯଦି ହୋଇଥାନ୍ତା ତେବେ ସେମାନେ ହୁଏତ ଆଉ କିଛି ଦିନ ବଞ୍ଚିବାର ସୁଯୋଗ ପାଇଥାନ୍ତେ । ସେଇ ସୁଯୋଗ ଟିକକ ଦ୍ୱାରା ଇତିହାସ ହୁଏତ ଅନ୍ୟ ଭାବେ ଲେଖା ଯାଆନ୍ତା । କିନ୍ତୁ ଗାନ୍ଧିଜୀଙ୍କ ଚିଠି ତାହା କରେଇ ଦେଲାନି ।

ଗାନ୍ଧିଜୀଙ୍କର ଉତ୍ତୁଙ୍ଗ ବ୍ୟକ୍ତିତ୍ୱ ସମ୍ମୁଖରେ ତାଙ୍କ ମତାମତର ବିରୋଧ କରନ୍ତା ବା କିଏ ? ଗାନ୍ଧିଜୀଙ୍କର ବ୍ୟକ୍ତିତ୍ୱ ସମ୍ପର୍କରେ ନେହେରୁ କହିଛନ୍ତି,

> ''ଆମେ ସମସ୍ତେ ଅନୁଭବ କଲୁ ଯେ ସେ ଥିଲେ ଜଣେ ମହାନ ଓ ଅଦ୍ୱିତୀୟ ମଣିଷ ଏବଂ ଜଣେ ଗୌରବମୟ ନେତା । ତାଙ୍କ ଉପରେ ବିଶ୍ୱାସ ରଖି, ଅନ୍ତତଃପକ୍ଷେ ଏହି ସମୟ ପାଇଁ, ତାଙ୍କୁ ଆମେ ପ୍ରାୟ ଖାଲି ଚେକ୍‌ଟିଏ ଦେଲୁ ।''[୧୨]

ଖାଲି ଚେକ୍‌ଟିରେ ଗାନ୍ଧିଜୀ ଯାହା ଭର୍ତ୍ତି କରିବେ କରନ୍ତୁ ! ଏପରି ସ୍ଥଳେ ଗାନ୍ଧିଙ୍କର ବିରୋଧ କରନ୍ତା ବା କିଏ ? ତେବେ ବି ସେହି ସମୟରେ ଗାନ୍ଧିଜୀଙ୍କର ବିରୋଧ ଜଣେ କେହି ବି ଯଦି କରୁଥିଲେ ତେବେ ସେ ଥିଲେ ଭଗତ ସିଂ । ଭଗତ ସିଂ କଣ କହୁଛନ୍ତି ଶୁଣନ୍ତୁ,

"ସମାଲୋଚନା ଓ ସ୍ୱାଧୀନ ଚିନ୍ତା, ଏହି ଦୁଇଟି ହେଉଛି ଜଣେ ବିପ୍ଳବୀର ଅପରିହାର୍ଯ୍ୟ ଗୁଣ । ଯେହେତୁ ମହାତ୍ମାଜୀ ମହାନ, ତାଙ୍କୁ କେହି ସମାଲୋଚନା କରିବା ଉଚିତ ନୁହେଁ । ଯେହେତୁ ଶିଖରରେ ସେ ପହଞ୍ଚି ସାରିଛନ୍ତି, ଯାହା ସବୁ ସେ କହିବେ — ରାଜନୀତି ଅବା ଧର୍ମ ଅବା ଅର୍ଥନୀତି ଅବା ନୀତିଶାସ୍ତ୍ର, ଯେଉଁ କ୍ଷେତ୍ର ହେଉନା କାହିଁକି — ତାହା ସବୁ ଠିକ୍ । ଠିକ୍ ବୋଲି ଆପଣଙ୍କର ହୃଦ୍‌ବୋଧ ହେଉ ବା ନହେଉ ଆପଣ କହିବାକୁ ବାଧ୍ୟ: 'ହଁ, ତାହା ସତ ।' ଏହି ମାନସିକତା ପ୍ରଗତି ଆଡ଼କୁ ବାଟ କଢ଼ାଇ ନିଏନା । ଓଲଟି ଏହା ଅତି ସୁସ୍ପଷ୍ଟ ଭାବେ ପ୍ରତିକ୍ରିୟାଶୀଳ ।"[୧୩]

ଗାନ୍ଧିଜୀଙ୍କ ପ୍ରତି ବିରୋଧଭାବର ଅଭାବର କାରଣ ସମ୍ପର୍କରେ ଭଗତ ସିଂ କହିଛନ୍ତି,

"ବସ୍ତୁତଃ, ଆମର ବଡ଼ ବଡ଼ ନେତାମାନେ, ସମ୍ଭବତଃ ପଣ୍ଡିତ ମୋତିଲାଲ ନେହେରୁଙ୍କ ଛଡ଼ା, ଅନ୍ୟ କେହି ନିଜ କାନ୍ଧ ଉପରକୁ କୌଣସି ବି ଦାୟିତ୍ୱ ନେବା ପାଇଁ ସାହସ କରନ୍ତିନି । ତେଣୁକରି ସେମାନେ ମଝିରେ ମଝିରେ ବିନା ସର୍ତ୍ତରେ ଗାନ୍ଧିଙ୍କ ନିକଟରେ ଆତ୍ମସମର୍ପଣ କରନ୍ତି । ସେମାନଙ୍କ ମଧ୍ୟରେ ଥିବା ମତପାର୍ଥକ୍ୟ ସତ୍ତ୍ୱେ ସେମାନେ କେବେ ହେଁ ଗମ୍ଭୀରତା ସହ ତାଙ୍କର ବିରୋଧ କରନ୍ତିନି ଏବଂ ମହାତ୍ମାଙ୍କ ପାଇଁ ହିଁ ସିଦ୍ଧାନ୍ତଗୁଡ଼ିକ ଗୃହୀତ ହୋଇଥାଏ ।"[୧୪]

ଗାନ୍ଧିଜୀ ଓ ଭଗତ ସିଂଙ୍କ ମଧ୍ୟରେ ବିରୋଧ ଭାବ ରହି ଆସିଥିଲା । ଗାନ୍ଧିଜୀ ଭଗତ ସିଂଙ୍କ ସମାଲୋଚନାର ଶରବ୍ୟ ହେଉଥିଲେ । ଏହି ବିରୋଧ ଭାବ ହିଂସା ବନାମ ଅହିଂସାର ବିରୋଧ ଭାବ ନୁହେଁ । କାରଣ ଗାନ୍ଧିଜୀ ଅହିଂସାର ପୂଜାରୀ ହେବା ସଙ୍ଗେ ସଙ୍ଗେ ଏହା ମଧ୍ୟ କହଛନ୍ତି,

"ମୁଁ ଏହା ବିଶ୍ୱାସ କରେ ଯେ କାପୁରୁଷତା ଓ ହିଂସା କେବଳ ଏହି ଦୁଇଟି ମଧ୍ୟରୁ ଗୋଟିଏକୁ ଯଦି ବାଛିବାକୁ ହୁଏ, ତେବେ ମୁଁ ହିଂସାକୁ ବାଛିବା ପାଇଁ ଉପଦେଶ ଦେବି । କାପୁରୁଷ ଭଳି ନିଜ ଅପମାନର ଅସହାୟ, ମୂକ ସାକ୍ଷୀ ହେବା ଅପେକ୍ଷା ନିଜର ସମ୍ମାନ ରକ୍ଷା ପାଇଁ ଭାରତ ଅସ୍ତ୍ର ଧାରଣ କରିବା ସପକ୍ଷରେ ମୁଁ ।"[୧୫]

ପ୍ରାକୃତିକ ଜଗତରେ, ଆମେ ଜାଣିଥାଉ ବା ନଥାଉ, ସମସ୍ତ ଘଟଣା ନିୟମାନୁବର୍ତ୍ତୀ । ଯେପରି ୦° ସେଣ୍ଟିଗ୍ରେଡ୍ (୩୨° ଫାରେନହାଇଟ)ରେ ପାଣି ବରଫ ପାଲଟି ଯାଏ ଏବଂ ୧୦୦° ସେଣ୍ଟିଗ୍ରେଡ୍ (୨୧୨° ଫାରେନହାଇଟ)ରେ ସମୁଦ୍ର ତଟରେ ପାଣି ଫୁଟେ, ବାଷ୍ପରେ ପରିଣତ ହେବା ଆରମ୍ଭ କରେ । ସାମାଜିକ ଘଟଣାବଳୀ କ୍ଷେତ୍ରରେ ଏପରି ଗାଣିତିକ ନିୟମାନୁବର୍ତ୍ତୀୟ ନିର୍ଦ୍ଦିଷ୍ଟତା ପାଇବା

କଷ୍ଟସାଧ୍ୟ । ତେଣୁ କେଉଁ ଲକ୍ଷ୍ମଣ ରେଖା ପାରି କରିବା ପୂର୍ବରୁ ଜଣେ ଲୋକ କାପୁରୁଷ ନୁହେଁ ଓ ତାହା ପାରି କରିବା ମାତ୍ରେ କାପୁରୁଷ ହୋଇଯିବ, ତାହା ସ୍ଥିର କରିବା କଷ୍ଟସାଧ୍ୟ । ଜାଲିଁଓ୍ୱାନାବାଗ ଗଣହତ୍ୟା ପରେ ଅବା ପଞ୍ଜାବ କେଶରୀ ଲାଲା ଲାଜପତ ରାୟଙ୍କ ଉପରେ ପୋଲିସର ବର୍ବର ଆକ୍ରମଣ ଓ ସେଥି ଯୋଗୁଁ ତାଙ୍କର ମୃତ୍ୟୁ ହେବା ପରେ ପଞ୍ଜାବ ଠାରୁ ଶହ ଶହ ମାଇଲ ଦୂରରେ ଥିବା ଜଣେ ବ୍ୟକ୍ତି ଦୁଃଖ ପ୍ରକାଶ କରି ହୁଏତ ପ୍ରେସନୋଟଟିଏ ଜାରି କରି ଦେଇ ତାଙ୍କର ଦାୟିତ୍ୱ ସରିଲା ବୋଲି ବିଚାରି ପାରନ୍ତି । କିନ୍ତୁ ପଞ୍ଜାବର ଜଣେ ଲୋକ ଂଯିଏ ସେହି ଘଟଣାକୁ ଅଙ୍ଗେ ନିଭେଇଛି, ଏଇତକ କରି ଦେଇ ଚୁପ୍ ରହି ନପାରେ, ଏପରି କରି ଚୁପ୍ ରହିବାଟା ତା ପକ୍ଷରେ କାପୁରୁଷତା ବୋଲି ମନେ କରିପାରେ । ତେଣୁ ଯେଉଁ ପଦକ୍ଷେପକୁ ଗାନ୍ଧିଜୀ କାପୁରୁଷତା ବୋଲି ମନେ କରିବେନି, ସେହି ପଦକ୍ଷେପକୁ ଭଗତ ସିଂ କାପୁରୁଷତା ବୋଲି ମନେ କରି ପାରନ୍ତି । ଗାନ୍ଧିଜୀ ଅହିଂସାର ପୂଜାରୀ ଥିଲେ, କିନ୍ତୁ ଭଗତ ସିଂ ହିଂସାର ପୂଜାରୀ ନଥିଲେ । ସେ କହିଛନ୍ତି,

> "ଆମେମାନେ ଯେଉଁମାନେ ମଣିଷ ଜୀବନକୁ ଅତି ପବିତ୍ର ମନେ କରୁଛୁ, ଆମେମାନେ ଯେଉଁମାନେ ଏକ ଉଜ୍ଜ୍ୱଳ ଭବିଷ୍ୟତର ସ୍ୱପ୍ନ ଦେଖୁଛୁ ଯେତେବେଳେ ମଣିଷକୁ ମିଳିବ ସମ୍ପୂର୍ଣ୍ଣ ଶାନ୍ତି ଓ ପୂର୍ଣ୍ଣ ସ୍ୱତନ୍ତ୍ରତା, ଦୁଃଖର ସହିତ ମାନି ନେଉଛୁ ଯେ ବାଧ୍ୟତାମୂଳକ ଭାବେ ଆମମାନଙ୍କୁ ମଣିଷର ରକ୍ତକ୍ଷୟ କରିବାକୁ ପଡୁଛି । କିନ୍ତୁ ଯେଉଁ ମହାନ ବିପ୍ଳବ ସମସ୍ତଙ୍କ ପାଇଁ ସ୍ୱାଧୀନତା ଆଣିଦେବ, ମଣିଷ ଦ୍ୱାରା ମଣିଷର ଶୋଷଣ ଅସମ୍ଭବ କରିଦେବ ସେହି ବିପ୍ଳବର ବେଦୀରେ ବଳୀଦାନ ଅନିବାର୍ଯ୍ୟ ।"[୧୬]

ଏପରିକି ଜେ.ପି. ସଣ୍ଡେର୍ସଙ୍କୁ ହତ୍ୟା କରି ତାଙ୍କ ସମ୍ପର୍କରେ ସେ କହୁଛନ୍ତି,

> "ଜଣେ ମଣିଷର ମୃତ୍ୟୁ ପାଇଁ ଆମେ ଦୁଃଖିତ । କିନ୍ତୁ ଏହି ଲୋକଟିର ମୃତ୍ୟୁ ଜରିଆରେ ମରିଛି ଏପରି ଏକ ଅନୁଷ୍ଠାନର ଜଣେ ପ୍ରତିନିଧି ଯାହା ଏତେ ନୃଶଂସ, ଜଘନ୍ୟ ତଥା ନୀଚ୍ ଯେ ତାର ବିଲୋପ ନିହାତି ଆବଶ୍ୟକ । ସଂସାରଯାକର ପ୍ରଜାପୀଡ଼କ ସରକାରଗୁଡ଼ିକ ମଧ୍ୟରେ ସବୁଠାରୁ ବଳି ପ୍ରଜାପୀଡ଼କ ହେଉଛି ଭାରତରେ ଥିବା ବ୍ରିଟିଶ୍ ସରକାରଙ୍କ ଅଧିକାରୀ, ଯାହାର ଏକ ଅଙ୍ଗ ମରିଛି ଏହି ଲୋକଟିର ମୃତ୍ୟୁରେ ।
>
> "ଜଣେ ମଣିଷର ଜୀବନ ଯାଇଥିବା ଯୋଗୁଁ ଆମେ ଦୁଃଖିତ । କିନ୍ତୁ ଯେଉଁ ବିପ୍ଳବ ସମସ୍ତଙ୍କ ପାଇଁ ସ୍ୱାଧୀନତା ଆଣିଦେବ ଓ ମଣିଷ ଦ୍ୱାରା ମଣିଷର ଶୋଷଣ ବନ୍ଦ କରିଦେବ ସେହି ବିପ୍ଳବର ବେଦୀରେ କେତେକ ବ୍ୟକ୍ତିର ବଳିଦାନ ଅନିବାର୍ଯ୍ୟ ।"[୧୭]

ଏପରିକି ଅସହଯୋଗ ଆନ୍ଦୋଳନ ଆରମ୍ଭ କରିବା ପୂର୍ବରୁ ଭାରତର ନିହାତି ଆବଶ୍ୟକ ଦାବୀ ବୋଲି ଯେଉଁ ୧୧ ଦଫା ଦାବୀପତ୍ର ଅହିଂସାର ପୂଜାରୀ ଗାନ୍ଧିଜୀ

ଭାଇସ୍‌ରାୟଙ୍କୁ ଦେଇଥିଲେ, ତହିଁର ୯ ନମ୍ବର ଦାବୀଟି ଥିଲା ଆତ୍ମରକ୍ଷା ସକାଶେ ଅସ୍ତ୍ରଶସ୍ତ୍ର ବ୍ୟବହାର କରିବା ପାଇଁ ଲାଇସେନ୍ସ ପ୍ରଦାନ ବ୍ୟବସ୍ଥା ।[୧୮]

ଏଥିଦ୍ୱାରା ମୁଷ୍ଟିମେୟ ଲୋକଙ୍କର ଆକସ୍ମିକ ଆବଶ୍ୟକତାକୁ ଭାରତର ଜନଗଣଙ୍କର ଏକ ନିହାତି ଆବଶ୍ୟକ ସାଧାରଣ ଦାବୀ ରୂପେ ଉପସ୍ଥାପିତ କରା ଯାଇଥିଲା । ଆତ୍ମରକ୍ଷା ଦୃଷ୍ଟିରୁ ବ୍ୟକ୍ତିର ହିଂସାର ମୁକାବିଲା ପାଇଁ, ଗାନ୍ଧିଜୀଙ୍କ ମତରେ, ଅସ୍ତ୍ରଶସ୍ତ୍ର ବ୍ୟବହାର କରାଯାଇ ପାରେ, କିନ୍ତୁ ବିଦେଶୀ ସରକାରର ସଂଗଠିତ ହିଂସାର ମୁକାବିଲା ପାଇଁ ତାଙ୍କର ନିର୍ଦ୍ଦେଶିତ ମାର୍ଗ ଥିଲା ଅହିଂସା ।

ଗାନ୍ଧିଜୀ ଅହିଂସାର ପୂଜାରୀ ଥିଲେ ଅଥଚ ସ୍ଥଳବିଶେଷରେ ହିଂସାର ବାଟ ଧରିବା ପାଇଁ ଉପଦେଶ ଦେବା ପାଇଁ ମଧ୍ୟ ପ୍ରସ୍ତୁତ ଥିଲେ । ଭଗତ ସିଂ ହିଂସାର ପୂଜାରୀ ନଥିଲେ ଅଥଚ ନିହାତି ଆବଶ୍ୟକ ସ୍ଥଳେ ହିଂସାର ପ୍ରୟୋଗ କରିବାକୁ ପଛାଉ ନଥିଲେ । ଅବଶ୍ୟ ଏହି 'ସ୍ଥଳବିଶେଷ'ର ଅର୍ଥ ଉଭୟଙ୍କ ପାଇଁ ସମାନ ନଥିଲା ।

ଭଗତ ସିଂ, ରାଜଗୁରୁ ଓ ସୁଖଦେବଙ୍କୁ ଫାଶୀ ହେବା ପରେ ଲାହୋରରେ ଏକ 'ସର୍ବ ଭାରତୀୟ ଭଗତ ସିଂ, ରାଜଗୁରୁ ଓ ସୁଖଦେବ ସ୍ମାରକ କମିଟି' ଗଠିତ ହୋଇଥିଲା ଓ ଏହି କମିଟି ତରଫରୁ ତିନି ଜାତୀୟ ବୀରଙ୍କ ସ୍ମୃତିରକ୍ଷା ଉଦ୍ଦେଶ୍ୟରେ ସହଯୋଗ କରିବା ସକାଶେ ଗାନ୍ଧିଜୀଙ୍କୁ ମଧ୍ୟ ଅନୁରୋଧ କରା ଯାଇଥିଲା । ତାର ଉତ୍ତର ଦେଇ କମିଟିର ସାଧାରଣ ସମ୍ପାଦକଙ୍କୁ ଗାନ୍ଧିଜୀ ଲେଖିଥିଲେ,

> ''ପ୍ରିୟ ବନ୍ଧୁ
>
> ''ଚଳିତ ମାସ ୧୩ ତାରିଖରେ ଆପଣ ଲେଖିଥିବା ଚିଠି ମୁଁ ପାଇଛି । ଆପଣଙ୍କ ଯୁକ୍ତି ଆଦୌ ମୋ ମନକୁ ପାଉନାହିଁ । କାହାରି ସମ୍ମାନରେ ଏକ ସ୍ମାରକ ପ୍ରତିଷ୍ଠା କରିବାର ନିଃସନ୍ଦେହ ଅର୍ଥ ଏହା ଯେ ଯାହାଙ୍କ ସ୍ମୃତିରେ ସ୍ମାରକଟି ପ୍ରତିଷ୍ଠା କରାଯାଇଛି ତାହାଙ୍କ କାର୍ଯ୍ୟାବଳୀକୁ ପ୍ରତିଷ୍ଠାତାମାନେ ଅନୁକରଣ କରିବେ । ସେହି କାର୍ଯ୍ୟାବଳୀକୁ ଅନୁକରଣ କରିବା ପାଇଁ ଆଗାମୀ ପିଢ଼ିମାନଙ୍କୁ ମଧ୍ୟ ଏହା ଏକ ନିମନ୍ତ୍ରଣ । ତେଣୁ ଏପରି ଏକ ସ୍ମାରକ ସହ କୌଣସି ଭାବରେ ବି ନିଜକୁ ଜଡ଼ିତ କରିବା ପାଇଁ ମୁଁ ଅକ୍ଷମ ।''[୧୯]

ଗାନ୍ଧିଜୀ ଏଠାରେ ତାଙ୍କର ଅହିଂସା ଆଦର୍ଶ ଠାରୁ ଇଞ୍ଚେ ମଧ୍ୟ ଘୁଞ୍ଚି ନାହାନ୍ତି । ଖାଣ୍ଟି ସଚ୍ଚୋଟତା ସହ ସେ ତାଙ୍କ ମତାମତ ଦେଇଛନ୍ତି । ତଥାପି ତାଙ୍କର ଦୃଷ୍ଟିରେ ଭଗତ ସିଂ ଓ ତାଙ୍କ ସାଥିମାନେ କୌଣସି ପ୍ରକାର ସ୍ମାରକ ପାଇଁ ଯୋଗ୍ୟ ନୁହଁନ୍ତି । ତେଣୁ ଆଜି ମଧ୍ୟ ସେମାନଙ୍କର ସ୍ମାରକ ବିରଳ, ଯଦିଚ୍ ଅନ୍ୟ ନେତାମାନଙ୍କର ସ୍ମାରକ ଛତୁ ଫୁଟିଲା ଭଳି ଦେଖା ଯାଉଛି । କଅଣ କେବଳ ସେମାନେ ହିଂସାର ବାଟ ଧରିଥିଲେ ବୋଲି ନା ଅନ୍ତରାଳରେ ଅନ୍ୟ କୌଣସି କାରଣ ରହିଛି ?

ଦୁଇ ପ୍ଲାଟୁନ୍ ଗଡ଼ୱାଲି ସୈନ୍ୟଙ୍କ ବିଦ୍ରୋହ ପ୍ରତି ଗାନ୍ଧିଜୀଙ୍କ ଦୃଷ୍ଟିକୋଣ ଅତି ବିଚିତ୍ର ମନେ ହୁଏ । ପେଶାବର ଅଞ୍ଚଳର ସ୍ଥାନୀୟ ନେତାମାନଙ୍କୁ ଗିରଫ କରାଯିବା

ପରେ ସେଠିକାର ବିକ୍ଷୁବ୍ଧ ଜନତା ଖୁବ୍ ବଡ଼ ଧରଣର ବିକ୍ଷୋଭ ପ୍ରଦର୍ଶନ କଲେ । ବିକ୍ଷୋଭକୁ ଦମନ କରିବା ପାଇଁ ସେଠିକୁ ସୈନ୍ୟ ପଠାଗଲା । ସୈନ୍ୟମାନେ ସମଗ୍ର ଜନତା ଉପରକୁ ଅନ୍ଧାଧୁନିଆଁ ଗୁଳିଚାଳନା କଲେ । ଶହ ଶହ ଲୋକ ମଲେ ଓ ଆଘାତ ପାଇଲେ । କିନ୍ତୁ ଅଷ୍ଟାଦଶ ରୟାଲ ଗଡ଼ୱାଲୀ ରାଇଫଲ୍‌ର ଦ୍ୱିତୀୟ ବାଟାଲିଅନ୍‌ର ଦୁଇ ପ୍ଲାଟୁନ୍ ସୈନ୍ୟ ବିଦ୍ରୋହ କରି ବିକ୍ଷୋଭକାରୀମାନଙ୍କ ଉପରକୁ ଗୁଳିଚାଳନା ପାଇଁ ଆଦେଶର ଅବଜ୍ଞା କଲେ ଓ ବିକ୍ଷୋଭକାରୀଙ୍କ ସହ ମିଳିତ ହୋଇଗଲେ । ସେମାନେ ଥିଲେ ହିନ୍ଦୁ ସୈନ୍ୟ ଓ ବିକ୍ଷୋଭକାରୀମାନେ ଥିଲେ ମୁସଲମାନ । ସେମାନେ ହୁଏତ ଗାନ୍ଧିଜୀଙ୍କ ଦର୍ଶନ ଦ୍ୱାରା ପ୍ରଭାବିତ ହୋଇଥିଲେ, ହିନ୍ଦୁ-ମୁସଲମାନ ଏକତାରେ ବିଶ୍ୱାସ ରଖୁଥିଲେ, ଅହିଂସାରେ ବିଶ୍ୱାସ ରଖୁଥିଲେ । ତେଣୁ ମୁସଲମାନ ଭାଇମାନଙ୍କ ଉପରକୁ ଗୁଳି ଚଳାଇବା ପାଇଁ ସେମାନେ ମନା କଲେ । ସାମୟିକ ପାଇଁ ହେଲେ ସୁଦ୍ଧା ସେମାନେ ହିଂସାରୁ ନିବୃତ୍ତ ରହିଲେ । ଏଥିରେ ଗାନ୍ଧିଜୀ ପ୍ରକୃତ ପକ୍ଷେ ଅତ୍ୟନ୍ତ ଆନନ୍ଦିତ ହେବା କଥା । ଓଲଟି ସେ ଅତ୍ୟନ୍ତ କ୍ଷୁବ୍ଧ ଥିଲେ । ବିଦ୍ରୋହ ଓ ଆଦେଶ ଅବଜ୍ଞା ଦୋଷରେ ଏହି ସୈନ୍ୟମାନଙ୍କର ମିଲିଟାରୀ କୋର୍ଟରେ ବିଚାର ହେଲା ଓ ସେମାନେ ଜେଲ୍‌ରେ ସଢ଼ିଲେ । ଗାନ୍ଧି-ଇରୱିନ୍ ଆଲୋଚନା ବେଳେ ଭଗତ ସିଂହ ଓ ତାଙ୍କ ସାଥୀମାନଙ୍କ କଥା ତେଣିକି ଥାଉ, ଏମାନଙ୍କର ମୁକ୍ତି କଥା ମଧ୍ୟ ଗାନ୍ଧିଜୀ ଉଠେଇ ନଥିଲେ । ଚୁକ୍ତିରେ ଏମାନେ ବାଦ ପଡ଼ିଲେ । ଚୁକ୍ତି ବଳରେ କଂଗ୍ରେସ କର୍ମୀମାନଙ୍କୁ ମୁକ୍ତି ମିଳିଲା, କିନ୍ତୁ ଏମାନେ ଜେଲ୍‌ରେ ସଢ଼ିଲେ । ଏହା ଦେଶବିଦେଶର ଅନେକଙ୍କୁ ଚକିତ କଲା ।

ଗାନ୍ଧିଜୀ ଗୋଲ୍ ଟେବୁଲ୍ ବୈଠକରେ ଯୋଗ ଦେବା କାଳରେ ଏହି ଘଟଣା ସମ୍ପର୍କରେ ଫରାସୀ ସାମ୍ବାଦିକ ଚାର୍ଲସ୍ ପେଟ୍ରାସ୍‌ଙ୍କ ଏକ ପ୍ରଶ୍ନର ଉତ୍ତର ଦେଇ ଗାନ୍ଧିଜୀ କହିଥିଲେ,

> "ଗୁଳି କରିବା ପାଇଁ ଆଦେଶର ଅବଜ୍ଞା କରିବା ଦ୍ୱାରା ଜଣେ ସୈନିକ ସେ ନେଇଥିବା ଶପଥ ଭଙ୍ଗ କରିଥାଏ ଓ ତଦ୍ୱାରା ନିଜକୁ ଅପରାଧମୂଳକ ଅବଜ୍ଞା ଦୋଷରେ ଦଣ୍ଡିତ ହେବା ପାଇଁ ଯୋଗ୍ୟ କରିଥାଏ । କର୍ମଚାରୀ ଓ ସୈନିକମାନଙ୍କୁ ଆଦେଶ ଅବଜ୍ଞା କରିବା ପାଇଁ କହି ପାରିବିନି, କାରଣ ଯେତେବେଳେ ମୁଁ ଶାସନ କରିବି ସେତେବେଳେ ସେଇ କର୍ମଚାରୀମାନଙ୍କୁ ଏବଂ ସେଇ ସୈନିକମାନଙ୍କୁ ହିଁ ବ୍ୟବହାର କରିବାର ଯଥେଷ୍ଟ ସମ୍ଭାବନା ରହିଛି । ଯଦି ଆଜି ମୁଁ ତାକୁ ଅବଜ୍ଞା କରିବା ପାଇଁ ଶିକ୍ଷା ଦେବି, ତେବେ ମୋର ଭୟ ହେଉଛି କାଲି ମୁଁ ଶାସନ ଗାଦିରେ ବସିଲେ ସେମାନେ ସେଇ ଏକା କଥା କରିବେ ।"[୨୦]

ଏହି କ୍ଷେତ୍ରରେ ଗାନ୍ଧିଜୀଙ୍କ ବ୍ୟବହାର ଯେମିତି ବିଚିତ୍ର ତାଙ୍କର ସଚ୍ଚୋଟତା ମଧ୍ୟ ସେମିତି ବିଚିତ୍ର । ଅଷ୍ଟାଦଶ ରୟାଲ ଗଡ଼ୱାଲୀ ରାଇଫଲ୍‌ର ଦ୍ୱିତୀୟ ବାଟାଲିଅନ୍‌ର ଦୁଇ ପ୍ଲାଟୁନ୍ ସୈନ୍ୟ ଗାନ୍ଧିଜୀଙ୍କର ଚିନ୍ତାଧାରା ଦ୍ୱାରା ଅନୁପ୍ରାଣୀତ ହୋଇଥିଲେ କହିଲେ

ଚଳେ । ତଥାପି ଗାନ୍ଧିଜୀ ହିଁ ସେମାନଙ୍କର ବିରୋଧ କରିଥିଲେ । ସତେ ଯେପରି ଶପଥ ନେବା ପରେ ସେମାନେ ରୋବଟ ଭଳି କାମ କରିବା ଉଚିତ । ଲୋକ, ଦେଶ, ହିଂସା-ଅହିଂସା, ଧର୍ମ-ଅଧର୍ମ, ନ୍ୟାୟ-ଅନ୍ୟାୟ ଏସବୁ କଥା ସେମାନେ ମୁଣ୍ଡରେ ପୁରେଇବା ଉଚିତ ନୁହେଁ । ପୁରେଇଲେ ତ ଆଦେଶ ଅବଜ୍ଞା କରିବେ । ତେଣୁ ସେସବୁ କଥା ମୁଣ୍ଡରେ ନ ପୁରେଇ କେବଳ ସରକାରର ସୁରକ୍ଷା ସେମାନଙ୍କର ଏକମାତ୍ର ଦାୟିତ୍ୱ ଓ ସେଥିପାଇଁ ସରକାରଙ୍କ ଆଦେଶ ପାଳନ କରିବା ଏକମାତ୍ର ଲକ୍ଷ୍ୟ ହେବା ଉଚିତ । ସେହି ସରକାରଟା ବିଦେଶୀ ସରକାର ହେଉ ଅବା ଭବିଷ୍ୟତର ଦେଶୀ ସରକାର ହେଉ । ଗାନ୍ଧିଜୀ ଭଲକରି ଜାଣିଥିଲେ ଯେ ବ୍ରିଟିଶ୍ ସରକାରଟା ବ୍ରିଟିଶ୍ ପୁଞ୍ଜିପତିମାନଙ୍କର ସରକାର ଥିଲା ଓ ଭାରତରେ ଥିବା ଇଂରେଜ ସରକାର ବ୍ରିଟିଶ୍ ପୁଞ୍ଜିପତିମାନଙ୍କର ସେବା କରୁଥିଲା । ଭାରତ ସ୍ୱାଧୀନ ହେଲେ ସରକାରଟା ଦେଶୀୟ ପୁଞ୍ଜିପତିମାନଙ୍କର ସେବା କରିବ । ତେଣୁ ସରକାରର ସୁରକ୍ଷା ହେଲା କର୍ମଚାରୀ ଓ ସୈନିକମାନଙ୍କର ପ୍ରଥମ ଓ ଏକମାତ୍ର ଦାୟିତ୍ୱ । ସ୍ୱାଧୀନ ଭାରତରେ ସେମାନଙ୍କର ଆବଶ୍ୟକତା ଓ ବ୍ୟବହାର କଥା ଗାନ୍ଧିଜୀ କହୁଛନ୍ତି । ଅଦରକାରୀ ଓ ଅନାବଶ୍ୟକତା କଥା ସେ କହୁ ନାହାଁନ୍ତି । ହିଂସା କରିବାର ହକ୍ ସେମାନଙ୍କର ରହିଲା । ଦେଶୀ ହେଉ ବା ବିଦେଶୀ ହେଉ ସେ ହକ୍ ସରକାରଙ୍କର ରହିଲା । ସେ କହିବା ଅନୁସାରେ, ସେ ନିଜେ ଗାଦିରେ ବସିଲେ ବି ତାଙ୍କର ସେ ଅଧିକାର ରହିଲା । କିନ୍ତୁ ଲୋକମାନେ ଯେଉଁ ଅବସ୍ଥାରେ ଥାଆନ୍ତୁ ନା କାହିଁକି ଅହିଂସା ମାର୍ଗ ଧରିବେ, ସରକାର ବିରୁଦ୍ଧରେ, ପୁଞ୍ଜିପତି ଶ୍ରେଣୀ ବିରୁଦ୍ଧରେ ହିଂସାର ମାର୍ଗ ଧରିବେନି, ଅସ୍ତ୍ରଧାରଣ କରିବେନି । ପୁଞ୍ଜିବାଦୀ ଯଜ୍ଞକୁଣ୍ଡରେ ଅହିଂସାକୁ ଆହୁତି ଦିଆଯାଇ ପାରେ, ହିନ୍ଦୁ-ମୁସଲମାନ ଏକତାକୁ ଆହୁତି ଦିଆଯାଇ ପାରେ ।

ବାସ୍ତବରେ, ୧୯୪୭ ଅଗଷ୍ଟ ୧୫ରେ ଭାରତ ସ୍ୱାଧୀନ ହେଲା । ଇଂରେଜମାନଙ୍କର ଜାତୀୟ ପତାକା ୟୁନିଅନ ଜ୍ୟାକକୁ ଓହ୍ଲେଇ ସ୍ୱାଧୀନ ଭାରତର ଜାତୀୟ ପତାକା ରୂପେ ତ୍ରିରଙ୍ଗାକୁ ଉଡ଼ାଗଲା । ଗଭର୍ଣ୍ଣର-ଜେନେରାଲ ହିସାବରେ ଲର୍ଡ୍ ମାଉଣ୍ଟବେଟେନଙ୍କ ସ୍ଥାନ ନେଲେ ଚକ୍ରବର୍ତ୍ତୀ ରାଜଗୋପାଳାଚାରୀ । ଏହା ଛଡ଼ା ଯାହା ଯେମିତି ଥିଲା ତାହା ସେମିତି ରହିଲା । ସେହି ଅଫିସରବର୍ଗ, ସେହି ସୈନ୍ୟବାହିନୀ, ସେହି ପୋଲିସ । ବ୍ରିଟିଶ୍ ଅମଳରେ ଗୋରା ସାହେବଙ୍କୁ ଏମାନେ ସଲାମ ମାରୁଥିଲେ, ବର୍ତ୍ତମାନ ସଲାମ ମାରିଲେ କ୍ଷମତାସୀନ ନେତାଙ୍କୁ । ବ୍ରିଟିଶ୍ ଅମଳରେ ବ୍ରିଟିଶ୍ ସ୍ୱାର୍ଥରେ ସ୍ୱାଧୀନତା ସଂଗ୍ରାମୀ ଓ ସାଧାରଣ ଜନତାଙ୍କୁ ଦମନ-ଶୋଷଣ କରୁଥିଲେ, ସ୍ୱାଧୀନତା ପ୍ରାପ୍ତି ପରେ କ୍ଷମତାସୀନ ଦଳର ସ୍ୱାର୍ଥରେ ବିରୋଧୀ ଦଳ ଓ ସାଧାରଣ ଜନତାଙ୍କୁ ଦମନ-ଶୋଷଣ କଲେ । ଉଭୟ ଶାସନରେ ସାଧାରଣ ଜନତାର ଦଶା ପ୍ରାୟ ଏକା ରହିଲା । ୧୯୫୦ ଜାନୁଆରୀ ୨୬ରେ ଏକ ନୂଆ ସମ୍ବିଧାନର ଭିତ୍ତିରେ ଭାରତକୁ ଏକ

ସାଧାରଣତନ୍ତ୍ର ରାଷ୍ଟ୍ର ଘୋଷଣା କରାଗଲା, ଅଥଚ୍ ପୂର୍ବ ଭଳି ଶାସନ ଯେମିତି ଚାଲୁଥିଲା ସେମିତି ଚାଲିଲା । ସାଧାରଣ ମଣିଷ ପାଇଁ କିଛି ଫରକ ପଡ଼ିଲାନି ।

ବ୍ରିଟିଶ୍ ସମ୍ରାଜ୍ଞୀଙ୍କ ଛତ୍ରଛାୟା ତଳେ ଭାରତର ପୁଞ୍ଜିପତିମାନେ ଅଧିକ ସୁରକ୍ଷିତ ରହି ପାରିବେ ବୋଲି ହୁଏତ ଗାନ୍ଧିଜୀ ଭାବୁଥିଲେ, ତେଣୁ ତାଙ୍କର ଲକ୍ଷ୍ୟ ରହି ଆସିଥିଲା ବ୍ରିଟିଶ୍ ସାମ୍ରାଜ୍ୟ ମଧ୍ୟରେ ଭାରତ ପାଇଁ ଡୋମିନିଅନ ଷ୍ଟେଟସ୍ । କେବଳ ଯୁବ ପିଢ଼ି ହିଁ କଂଗ୍ରେସ ଉପରେ ଲଦି ଦେଇଥିଲେ ''ପୂର୍ଣ୍ଣ ସ୍ବରାଜ'' ପ୍ରସ୍ତାବ । ମୂର୍ଖାମୀ ଯୋଗୁଁ ବ୍ରିଟିଶ୍ ସରକାର ଗାନ୍ଧିଜୀଙ୍କ କଥାକୁ ଉପଲବ୍ଧି କରି ପାରିଲେନି । ଶେଷରେ ଭାରତ ଛାଡ଼ି ଚାଲିଗଲେ । ତେଣୁ ଗାନ୍ଧିଜୀ ଓ ଭଗତ ସିଂଙ୍କ ମଧ୍ୟରେ ଥିବା ବିରୋଧ ଅହିଂସା-ହିଂସାର ବିରୋଧ ନୁହେଁ, ତାହା ହେଉଛି ପୁଞ୍ଜିବାଦ ଓ ସାମ୍ୟବାଦ ମଧ୍ୟରେ ଥିବା ବିରୋଧ, ତାହା ହେଉଛି ସ୍ଥିତାବସ୍ଥା ଓ ବିପ୍ଳବ ମଧ୍ୟରେ ଥିବା ବିରୋଧ, ତାହା ହେଉଛି ପୁଞ୍ଜିପତି ଶ୍ରେଣୀର ସ୍ୱାର୍ଥ ଓ ଖଟିଖିଆ ମଣିଷର ସ୍ୱାର୍ଥ ମଧ୍ୟରେ ଥିବା ବିରୋଧ ।

ଭାରତରେ ବିପ୍ଳବୀମାନଙ୍କର କାର୍ଯ୍ୟକଳାପ ଦିନକୁ ଦିନ ବୃଦ୍ଧି ପାଉଥିଲା । ସେମାନଙ୍କୁ ସେମାନଙ୍କର ବୈପ୍ଳବିକ କାର୍ଯ୍ୟକ୍ରମରୁ ନିବୃତ୍ତ କରିବା ଗାନ୍ଧିଜୀଙ୍କ ଉଦ୍ଦେଶ୍ୟ ଥିଲା । ତେଣୁ ସେମାନଙ୍କ ସହ ଆଲୋଚନା କରିବା ପାଇଁ ଗାନ୍ଧିଜୀ ବଙ୍ଗଳା ଗଲେ । ସେଠାରେ ସେମାନଙ୍କ ମଧ୍ୟରୁ କେତେକଙ୍କ ସହ ସେ କଥାବାର୍ତ୍ତା କଲେ । ଏକ ବର୍ଷ ମଧ୍ୟରେ ସ୍ୱାଧୀନତା ଆଣିଦେବେ ବୋଲି ସେମାନଙ୍କୁ ପ୍ରତିଶ୍ରୁତି ଦେଲେ । ପ୍ରତିଶ୍ରୁତି ପୂରଣ ନହେଲେ ସେମାନେ ପୁଣି ସେମାନଙ୍କ କାର୍ଯ୍ୟକ୍ରମ ଚାଲୁ କରି ପାରିବେ ବୋଲି କଥା ତୁଟିଲା । ସେହି ପ୍ରତିଶ୍ରୁତି ରକ୍ଷା କରିବା ପାଇଁ ୧୯୨୦ ମସିହା ଅଗଷ୍ଟ ୧ ତାରିଖରେ ଗାନ୍ଧିଜୀ ତାଙ୍କର ପ୍ରଥମ ଦେଶବ୍ୟାପୀ ସତ୍ୟାଗ୍ରହ ଆନ୍ଦୋଳନ ଆରମ୍ଭ କଲେ । ଏହା ବ୍ରିଟିଶ୍ ରାଜକୁ ପ୍ରଚଣ୍ଡ ଧକ୍କା ଦେବ ବୋଲି ତାଙ୍କର ଦୃଢ଼ ବିଶ୍ୱାସ ଥିଲା । ବର୍ଷେ ବିତିଗଲା । ଦେଶର ବିଭିନ୍ନ ପ୍ରାନ୍ତରେ ୧୦୩ ଜଣ ପ୍ରାଣ ହରାଇଲେ ଓ ୪୨୦ ଜଣ ଆଘାତପ୍ରାପ୍ତ ହେଲେ । ୬୦ ହଜାର ସତ୍ୟାଗ୍ରହୀ ଗିରଫ ହୋଇ ବ୍ରିଟିଶ୍ ଅଧୀନସ୍ଥ ଭାରତର ବିଭିନ୍ନ ଜେଲ୍‌ରେ ସଢ଼ିଲେ । ଫଳ କିଛି ହେଲାନି । ବ୍ରିଟିଶ୍ ରାଜ ପୂର୍ବ ଭଳି ଦୃଢ଼ ରହିଥିଲା । ତେଣୁ ଗାନ୍ଧିଜୀ ତାଙ୍କର ଶେଷ ଓ ସବୁଠାରୁ ବଳି ଶକ୍ତିଶାଳୀ ଅସହଯୋଗ ଅସ୍ତ୍ର ଛାଡ଼ିବା ସକାଶେ ପ୍ରସ୍ତୁତ ହେଇ ଗୁଜରାଟରେ ବାର୍‌ଦୋଲୀର ଚାଷୀମାନଙ୍କୁ ଭୂମି କର ପଇଠ ନ କରିବା ପାଇଁ ଆହ୍ୱାନ କଲେ । ଆନ୍ଦୋଳନ ଆହୁରି ବ୍ୟାପକ ହେଲା । ସ୍ୱରାଜର ପ୍ରତିଧ୍ୱନୀ ପୁରପଲ୍ଲୀରେ ନିନାଦିତ ହେଲା । ଚାଷୀମାନେ ମଧ୍ୟ ଆନ୍ଦୋଳନରେ ଝାସ ଦେଲେ । କିନ୍ତୁ ଏହି ଆନ୍ଦୋଳନ ସମ୍ପର୍କରେ କାହାର ବି ସ୍ପଷ୍ଟ ଧାରଣା ନଥିଲା । ଏପରିକି ଗାନ୍ଧିଙ୍କର ମଧ୍ୟ ନୁହେଁ । ୧୯୩୫ ମସିହାରେ ପ୍ରକାଶିତ ଭାରତୀୟ ଜାତୀୟ କଂଗ୍ରେସର ମଞ୍ଜୁରୀପ୍ରାପ୍ତ ଇତିହାସ *History of the Indian National Cogress* କହେ,

''ଆଇନ ଅମାନ୍ୟ ଆନ୍ଦୋଳନ ଲୋକଙ୍କୁ ଆକର୍ଷିତ କରୁଥିଲା । ତାହା କଣ, କିପରିକା ଜିନିଷ? ଗାନ୍ଧି କେବେ ତାର ସଂଜ୍ଞା ଦେଇ ନଥିଲେ, ତାର ସବିସ୍ତାର ବ୍ୟାଖ୍ୟା କରି ନଥିଲେ, ନିଜ ପାଇଁ ମଧ ସେ ତାର ମାନସିକ ଚିତ୍ର ଆଙ୍କି ନଥିଲେ । ସୂକ୍ଷ୍ମ ଦୃଷ୍ଟି ସମ୍ପନ୍ନ, ନିରୋଳା ହୃଦୟର ବ୍ୟକ୍ତିଙ୍କୁ ତାହା ପାଦକ ପରେ ଆଉ ପାଦେ ରୀତିରେ ଦେଖାଯିବ ଠିକ୍ ଯେପରି ଏକ ଘନ ଜଙ୍ଗଲରେ ଜଣେ ବାଟବଣା ହତାଶପ୍ରାୟ ବାଟୋଇର ବାଟ ଅଣ୍ଡାଳି ହେଉଥିବା ଅବସନ୍ନ ପାଦକୁ କ୍ଷୀଣ ଆଲୋକ ରେଖାଟିଏ ପଥ ଦେଖାଇ ଆଶାର ଆଲୋକ ଜଳାଏ ।''[୨୧]

''ସାବରମତି ଠାରେ ଯେଉଁମାନେ ସମବେତ ହୋଇଥିଲେ ସେମାନେ ଗାନ୍ଧିଙ୍କୁ ତାଙ୍କର ଯୋଜନା ବିଷୟରେ ପଚାରିଲେ । ସେମାନେ ତାହା ପଚାରିବା ବି ଉଚିତ ଥିଲା, ଯଦିଚ ଲର୍ଡ଼ କିଚ୍‌ନେର ଅବା ମାରଶାଲ୍ ଫୋକ୍ ଅବା ଫନ୍ ହିଣ୍ଡେନ୍‌ବର୍ଗଙ୍କୁ ବିଶ୍ୱ ଯୁଦ୍ଧ ପୂର୍ବରୁ ତାଙ୍କର ଯୋଜନା ଖୋଲି କହିବା ପାଇଁ କେହି ପଚାରନ୍ତେନି । ସେମାନଙ୍କର ଯୋଜନା ଥିଲା, କିନ୍ତୁ ସେଗୁଡ଼ିକୁ ହୁଏତ ସେମାନେ ଖୋଲି କହନ୍ତେନି । ସତ୍ୟାଗ୍ରହକୁ ନେଇ ସେମିତି କିଛି ନଥିଲା । ଆମର ଯୋଜନାଗୁଡ଼ିକୁ ନେଇ ଗୋପନୀୟତା କିଛି ନଥିଲା । କିନ୍ତୁ ସେଗୁଡ଼ିକର ରୂପ ସ୍ପଷ୍ଟ ମଧ ନଥିଲା । ସେଗୁଡ଼ିକ ଆପେ ଆପେ ନିଜକୁ ପ୍ରକାଶ କରିବେ, ଠିକ୍ ଯେପରି ସକାଳୁଆ କୁହୁଡ଼ିରେ ଏକ ଦ୍ରୁତଗାମୀ ମଟରଗାଡ଼ିକୁ ରାସ୍ତାଟି ପ୍ରାୟ ଗଜକ ପରେ ଆଉ ଗଜେ ରୀତିରେ ପ୍ରକଟିତ ହୋଇଥାଏ । ଜଣେ ସତ୍ୟାଗ୍ରହୀ ତାର କପାଳରେ ଏକ ଟର୍ଚ୍ଚଲାଇଟ ବୋହିଥାଏ । ତାହା, ପର ପଦକ୍ଷେପ ପାଇଁ ବାଟ ଦେଖାଏ ।''[୨୨]

ସୁଭାଷ ବୋଷଙ୍କୁ ଉଦ୍ଧୃତ କରି ରଜନୀ ପାମ୍ ଦତ୍ତ, ଯିଏ ସେହି ସମୟରେ ଇଂଲଣ୍ଡର କମ୍ୟୁନିଷ୍ଟ ପାର୍ଟିର ଜଣେ ପ୍ରତିଷ୍ଠାତା-ସଭ୍ୟ ଓ ତାର ନେତୃମଣ୍ଡଳୀରେ ଥିଲେ ତଥା ଭାରତର କମ୍ୟୁନିଷ୍ଟ ଆନ୍ଦୋଳନକୁ ପରାମର୍ଶ ଦେଉଥିଲେ, ଲେଖିଛନ୍ତି,

''୧୯୨୧ ମସିହାର ସେହି ସାଘାତିକ ଦିନଗୁଡ଼ିକରେ ଏକ ଉତ୍ସୁକ ଯୁବ ଶିଷ୍ୟ ହିସାବରେ ମହାତ୍ମାଙ୍କ ସହ ସୁଭାଷ ବୋଷଙ୍କର ପ୍ରଥମ ସାକ୍ଷାତ ହୋଇଥିଲା । ଏହି ସାକ୍ଷାତରେ ସେ ମହାତ୍ମାଙ୍କ ଠାରୁ 'ବିଦେଶୀ ଅମଲାତନ୍ତ୍ର ଠାରୁ କ୍ଷମତା ଅନ୍ତିମ ରୂପେ ଅଧିକାର କରିବା ପାଇଁ ତାଙ୍କର ଯୋଜନା — ତାର କ୍ରମିକ ସ୍ତରଗୁଡ଼ିକ — ସମ୍ପର୍କରେ ସ୍ପଷ୍ଟ ରୂପ' ପାଇବା ପାଇଁ ଚେଷ୍ଟା କରିଥିଲେ ଓ ଉତ୍ତରଟିଏ ପାଇବାରେ ବିଫଳ ହୋଇଥିଲେ । ସୁଭାଷ ବୋଷ ନିଜର ହତୋତ୍ସାହ କଥା ବର୍ଣ୍ଣନା କରି କହିଛନ୍ତି, 'ତାଙ୍କର ବାସ୍ତବ ଆଶା କଣ ମୁଁ ବୁଝିବାରେ ଅକ୍ଷମ ଥିଲି । ହୁଏତ ଯଥାର୍ଥ ସମୟ ପୂର୍ବରୁ ତାଙ୍କର ସମସ୍ତ ଗୁପ୍ତକଥାକୁ ପ୍ରକାଶ କରିବା ପାଇଁ ସେ ଚାହୁଁ ନଥିଲେ ଅବା ସରକାରଙ୍କ ହାତକୁ ବାଧ କଲାଭଳି ରଣକୌଶଳର ସ୍ପଷ୍ଟ ଧାରଣା ତାଙ୍କ ପାଖେ ନଥିଲା ।'''[୨୩]

ଏପରିକି ୧୯୩୯ ମସିହା ବେଳକୁ ମଧ ଗାନ୍ଧି ଲେଖିଥିଲେ,

''ଆଗକୁ ଯିବା ପାଇଁ ମୋ ପାଖେ କୌଣସି ନିର୍ଦ୍ଧାରିତ ତତ୍ତ୍ୱ ନାହିଁ । *ସତ୍ୟାଗ୍ରହ* ବିଜ୍ଞାନକୁ ତାର ସମ୍ପୂର୍ଣ୍ଣ ରୂପରେ ବିକାଶ କରିନାହିଁ । ତଥାପି ମୁଁ ଦରାଣି

ହେଉଛି — ଅନ୍ୱେଷଣ ଜାରି ରହିଛି । ଏହା ଯଦି ଆପଣଙ୍କର ହୃଦୟକୁ ଛୁଉଁଛି ଓ ଆପଣ ଆହ୍ୱାନକୁ ଅନୁଭବ କରୁଛନ୍ତି, ଆପଣ ମୋ ସହ ମୋ ଅନ୍ୱେଷଣରେ ଯୋଗ ଦେଇ ପାରନ୍ତି ।''[୪]

ତେଣୁ ପ୍ରଥମ ସତ୍ୟାଗ୍ରହ ଆନ୍ଦୋଳନ ତା ନିଜସ୍ୱ ଗତିରେ ଗଲା । ସରକାର ବିବ୍ରତ ହେଲେ । ତାଙ୍କର ସକଳ ଶକ୍ତି ଏହି ସର୍ବ ଭାରତୀୟ ଆନ୍ଦୋଳନକୁ ଜବତ୍ କରିବା ପାଇଁ ସକ୍ଷମ ନଥିଲା । ଆନ୍ଦୋଳନ ବ୍ରିଟିଶ୍ ରାଜକୁ ଶରବ୍ୟ କରିବା ସଙ୍ଗେ ସଙ୍ଗେ ରଜା ଜମିଦାର ପୁଞ୍ଜିପତିଙ୍କୁ ମଧ୍ୟ ଶରବ୍ୟ କଲା । ତେଣୁ ଗାନ୍ଧିଜୀ ମଧ୍ୟ ବିବ୍ରତ ଥିଲେ, ଦୁଃଖିତ ଥିଲେ । ଆନ୍ଦୋଳନ ଆଉ ତାଙ୍କ ନିର୍ଦ୍ଦେଶରେ ମାପିଚୁପି ଚାଲିବା ସମ୍ଭବ ନଥିଲା । ଆନ୍ଦୋଳନକୁ ପ୍ରତ୍ୟାହାର କରିବା ପାଇଁ ସେ ଏକ ଆଳ ଉଣ୍ଢୁ ଥିଲେ । ୧୯୨୨ ଫେବୃଆରୀରେ ଚଉରୀ ଚଉରା ଘଟଣା ଘଟିଲା । ସେଠାରେ ଆନ୍ଦୋଳନକାରୀମାନେ ଥାନାରେ ନିଆଁ ଲଗେଇ ଦେବା ଫଳରେ ଥାନା ଭିତରେ ଥିବା ୨୨ ଜଣ ପୋଲିସ କର୍ମଚାରୀ ପୋଡ଼ି ହୋଇ ମଲେ । ଗାନ୍ଧିଜୀ ଖୋଜୁଥିବା ଆଳ ତାଙ୍କୁ ମିଳିଗଲା । କୌଣସି କମିଟିର ନିଷ୍ପତ୍ତି ନଥାଇ ଆନ୍ଦୋଳନକୁ ସେ ବ୍ୟକ୍ତିଗତ ଭାବେ ପ୍ରତ୍ୟାହାର କଲେ । ତଥାକଥିତ ସତ୍ୟାଗ୍ରହୀମାନଙ୍କୁ ଯଥାର୍ଥ ସତ୍ୟାଗ୍ରହୀ ଭାବେ ପ୍ରସ୍ତୁତ ନକରି ଆନ୍ଦୋଳନର ଡାକରା ଦେଇ ସେ ଗୁରୁତର ଭୁଲ କରିଛନ୍ତି ବୋଲି ଘୋଷଣା କଲେ ।

ଏମିତି ତ ହିଂସା ପ୍ରତି ଦିନ, ପ୍ରତି ମୁହୂର୍ତ୍ତରେ ଘଟୁଛି । ସେଥିରେ ସନ୍ତ୍ରାସବାଦୀ ମରନ୍ତୁ, ପୋଲିସ ମରନ୍ତୁ ବା ସାଧାରଣ ନାଗରୀକ ମରନ୍ତୁ, ଲୋକେ ଯଥାଯଥ ପ୍ରତିକ୍ରିୟା ପ୍ରକାଶ କରୁଛନ୍ତି । ସମୟର ଗତିରେ ଭୁଲି ଯାଉଛନ୍ତି । କିନ୍ତୁ ବାସ୍ତବରେ ହିଂସା ହେଉଛି ଦୁଇ ପ୍ରକାରର । ପ୍ରଥମଟି ଅପରାଧଜନୀତ ଓ ଦ୍ୱିତୀୟଟି ବିପ୍ଳବଜନୀତ । ପ୍ରଥମଟି ସମାଜରେ କିଛିଟା ବିଶୃଙ୍ଖଳା ସୃଷ୍ଟି କରେ, କିଛିଟା ହଲଚଲ୍ ସୃଷ୍ଟି କରେ, ଲୋକଙ୍କ ମନରେ କିଛିଟା ପ୍ରତିକ୍ରିୟା ସୃଷ୍ଟି କରେ, କିନ୍ତୁ ସମାଜକୁ ଓଲଟପାଲଟ କରେନା । ସମୟର ଗତିରେ ସମାଜ ପୁଣି ପୂର୍ବ ଭଳି ଚାଲେ । ଅଥଚ୍ ବିପ୍ଳବଜନିତ ହିଂସାର ଅନ୍ତରାଳରେ ରହିଥାଏ ଏକ ଆଦର୍ଶ । ସେହି ଆଦର୍ଶର ବାସ୍ତବ ରୂପାୟନ ପାଇଁ ବେଳେ ବେଳେ ହିଂସାର ଆବଶ୍ୟକ ପଡ଼ିଥାଏ । ''ବେଳେ ବେଳେ'' ବୋଲି କହିଲି କାରଣ ହିଂସା ଆଦୌ ଆବଶ୍ୟକ କି ନୁହେଁ, ଯଦି ଆବଶ୍ୟକ ତେବେ କେଉଁ ଆକାରର, ଏହି ସମସ୍ତ କଥା ନିର୍ଭର କରିଥାଏ ଐତିହାସିକ ପରିସ୍ଥିତି ଉପରେ, ଶତ୍ରୁର ଆକ୍ରମଣ ଓ ପ୍ରତିରୋଧ ଶକ୍ତି ଉପରେ । ଭଗତ ସିଂଙ୍କ ହିଂସା ଥିଲା ବୈପ୍ଳବିକ ହିଂସା । ତାରି ପଛରେ ଥିଲା ଏକ ଆଦର୍ଶ, ଯାହା ସମାଜକୁ ଓଲଟପାଲଟ କରିଦିଏ, ଯାହା ପୁଞ୍ଜିବାଦୀ ସମାଜର ଧ୍ୱଂସସ୍ତୁପ ଉପରେ ଠିଆ କରାଏ ଏକ ନୂତନ ସମାଜ, ସମାଜବାଦୀ ସମାଜ — କମ୍ୟୁନିଷ୍ଟ ମତବାଦ ଅନୁସାରେ ପ୍ରତିଷ୍ଠିତ ସମାଜ । କମ୍ୟୁନିଷ୍ଟ ମତବାଦ ପ୍ରତି

ଅନେକଙ୍କର ଭୟ ଥିଲା — ଆଜି ମଧ୍ୟ ଅଛି । ଗାନ୍ଧିଜୀ ସେହି ମତବାଦର ତଥା ତାର ପ୍ରବକ୍ତା ଭଗତ ସିଂଙ୍କର ଘୋର ବିରୋଧୀ ଥିଲେ । ତେଣୁ କଂଗ୍ରେସ ଦଳରେ ମଧ୍ୟ ସାଧାରଣ ଭାବେ କମ୍ୟୁନିଷ୍ଟ ମତବାଦ ଓ ଭଗତ ସିଂଙ୍କ ପ୍ରତି ବିରୋଧ ଭାବ ରହିଲା ।

ତଥାପି କଂଗ୍ରେସ ଦଳ ମଧ୍ୟରେ ଯୁବ ବିପ୍ଳବୀମାନଙ୍କ ପାଇଁ ଦରଦ ମଧ୍ୟ ଥିଲା । ଫାଶୀ ଦେବାର ଠିକ୍ ପୂର୍ବରୁ ଗାନ୍ଧି-ଇରୱିନ୍ ଚୁକ୍ତି ହୋଇଥିବା ଯୋଗୁଁ ସେଥିରେ ଦସ୍ତଖତ କରିଥିବା ନେତାମାନଙ୍କର ବ୍ୟାପକ ସମାଲୋଚନା ହୋଇଥିଲା । ସେହି ଚୁକ୍ତିକୁ ଏକ ବିଶ୍ୱାସଘାତକତା ବୋଲି କେତେକ ସମାଲୋଚନା କଲେ । ଗାନ୍ଧି ନିଜେ ମଧ୍ୟ ସେହି ସମାଲୋଚନାରୁ ବାଦ ପଡ଼ି ନଥିଲେ । ଏହି ବିପ୍ଳବୀମାନଙ୍କ ବିରୁଦ୍ଧରେ ପ୍ରସ୍ତାବ ଗ୍ରହଣ କରିବା ମଧ୍ୟ ଗାନ୍ଧିଜୀଙ୍କ ପକ୍ଷରେ କଷ୍ଟ ହେଉଥିଲା । ଉଦାହରଣ ସ୍ୱରୂପ, ୧୯୨୯ ମସିହା ଡିସେମ୍ବର ମାସରେ ଭାରତୀୟ ଜାତୀୟ କଂଗ୍ରେସର ଲାହୋର ଅଧିବେଶନରେ ବ୍ରିଟିଶ୍ ଭାଇସ୍‌ରାୟଙ୍କ ଟ୍ରେନ୍ ଉପରେ ବୋମା ଆକ୍ରମଣର ନିନ୍ଦା କରି ଏକ ପ୍ରସ୍ତାବ ଗୃହିତ କରେଇବା ଗାନ୍ଧିଜୀଙ୍କ ପକ୍ଷରେ କଷ୍ଟ ହୋଇଥିଲା । ୧୭୧୩ ଜଣ ପ୍ରତିନିଧିଙ୍କ ମଧ୍ୟରେ କେବଳ ୮୧ ଟି ଅଧିକ ଭୋଟ ପାଇ ପ୍ରସ୍ତାବଟି ଗୃହିତ ହୋଇଥିଲା । ଏହି ଘଟଣାକୁ ନେଇ ଲାହୋର କଂଗ୍ରେସର ପ୍ରସ୍ତାବଟି ଥିଲା:

> ‘‘ଭାଇସ୍‌ରାୟଙ୍କ ରେଳ ଉପରେ କରା ଯାଇଥିବା ବୋମା ଦୌରାତ୍ମ୍ୟ ପାଇଁ ଏହି କଂଗ୍ରେସ ଦୁଃଖ ପ୍ରକାଶ କରୁଛି ଓ ଏହାର ଦୃଢ଼ ବିଶ୍ୱାସକୁ ଦୋହରାଉଛି ଯେ ଏହି ଭଳିଆ କାମ କଂଗ୍ରେସର ନୀତିର କେବଳ ବିରୋଧ କରୁନାହିଁ, ଜାତୀୟ ଉଦ୍ଦେଶ୍ୟର ମଧ୍ୟ କ୍ଷତି କରୁଛି । ସୌଭାଗ୍ୟବଶତଃ ଅଳ୍ପକେ ରକ୍ଷା ପାଇ ଯାଇଥିବା ଯୋଗୁଁ ଭାଇସ୍‌ରାୟ ଓ ଲେଡ଼ି ଇରୱିନ୍ ତଥା, ବାପୁଡ଼ା ଚାକରବାକରଙ୍କ ସହ, ତାଙ୍କ ଦଳକୁ ଏହା ଅଭିନନ୍ଦନ ଜଣଉଛି ।’’[୫]

ହିଂସା ପଥର ଯାତ୍ରୀ ହୋଇଥିଲେ ମଧ୍ୟ ଦେଶପ୍ରେମୀଙ୍କ ନିନ୍ଦା ଓ ଭାଇସ୍‌ରାୟଙ୍କ ପ୍ରତି ଦରଦ ଯୋଗୁଁ ବୋଧହୁଏ ପ୍ରସ୍ତାବଟିର ଏହି ପରିମାଣରେ ବିରୋଧ ହୋଇଥିଲା ।

ଭଗତ ସିଂହ ଓ ତାଙ୍କ ସାଥୀମାନଙ୍କ ଫାଶୀ ପରେ ସେମାନଙ୍କର ସମ୍ମାନ କଂଗ୍ରେସ ମହଲରେ ଆହୁରି ବଢ଼ି ଯାଇଥିଲା । ଏପରିକି ସେହି ସମୟରେ ଗାନ୍ଧିଜୀଙ୍କର ନାମ ଯେପରି ସାରା ଭାରତରେ ପରିଚିତ ଥିଲା, ଗାନ୍ଧିଜୀ ଯେପରି ଜନପ୍ରିୟ ଥିଲେ, ଠିକ୍ ସେପରି ଭଗତ ସିଂଙ୍କ ନାମ ଭାରତବ୍ୟାପୀ ଜଣାଶୁଣା ହୋଇ ସାରିଥିଲା, ଭଗତ ସିଂ ମଧ୍ୟ ସେତିକି ଜନପ୍ରିୟ ହୋଇ ସାରିଥିଲେ ବୋଲି ପଟ୍ଟାଭି ସୀତାରାମ୍ମାୟା ତାଙ୍କ ରଚିତ ଇତିହାସରେ ଉଲ୍ଲେଖ କରିଛନ୍ତି ।[୬] କଂଗ୍ରେସର କରାଚୀ ବୈଠକ ମଧ୍ୟ ଏପରି ପ୍ରଭାବରୁ ବାଦ୍ ପଡି ନଥିଲା । ବିପ୍ଳବୀମାନଙ୍କ ପ୍ରତି ଗାନ୍ଧିଜୀଙ୍କର ଜାତୀୟତା ବିରୋଧୀ ଭୂମିକା ଯୋଗୁଁ ସାରା ଦେଶରେ ସୃଷ୍ଟି ହୋଇଥିବା ଅସନ୍ତୋଷ ମନୋଭାବକୁ ଦୃଷ୍ଟିରେ ରଖି ଗାନ୍ଧିଜୀ କରାଚୀରେ ସମସ୍ତ ଉନ୍ମୋଚନ ଶୋଭାଯାତ୍ରାକୁ ରଦ୍ଦ କରି

ଦେଇଥିଲେ ।[୨୭] ବିଶେଷ କରି ଯୁବ ପିଢ଼ିର ନେତାମାନେ ଗାନ୍ଧି-ଇର୍‌ୱିନ ଚୁକ୍ତିର କଠୋର ସମାଲୋଚନା କଲେ । ଅନ୍ୟତ୍ର, ଭଗତ ସିଂ ଓ ତାଙ୍କ ସାଥୀମାନଙ୍କ ଦେଶ ସେବାର ପ୍ରଶଂସା କରି ସେମାନଙ୍କ ସମ୍ମାନରେ କଲିକତା ମହାନଗରପାଳିକାର ସଭାକୁ ମୁଲତବି ରଖା ଯାଇଥିଲା । ଭଗତ ସିଂ ଓ ତାଙ୍କ ସାଥୀମାନଙ୍କ ଫାଶୀର ପ୍ରତିବାଦ କରି ନ୍ୟାସନାଲିଷ୍ଟ ପାର୍ଟିର ସଭ୍ୟମାନେ ବିଧାନସଭାରୁ ବାହାରି ଆସିଥିଲେ ।

କେବଳ ସେତିକି ନୁହେଁ । କରାଚୀ କଂଗ୍ରେସର କାର୍ଯ୍ୟକ୍ରମ ଉପରେ ମଧ୍ୟ ତାର ପ୍ରଭାବ ପଡ଼ିଥିଲା । ଭଗତ ସିଂ ଓ ତାଙ୍କର ଦୁଇ ସାଥୀଙ୍କ ସମ୍ପର୍କରେ ଗୃହୀତ ହୋଇଥିବା ପ୍ରସ୍ତାବ କହେ:

> "ଯଦିଚ୍ଚ ଯେକୌଣସି ଧରଣର ବା ଆକାରର ରାଜନୈତିକ ହିଂସାଠୁଁ ନିଜକୁ ଦୂରେଇ ରଖେ ଓ ତାକୁ ଅପସନ୍ଦ କରେ, ତଥାପି ଏହି କଂଗ୍ରେସ ସ୍ୱର୍ଗତ ଭଗତ ସିଂ ଓ ତାଙ୍କ ସାଥୀଗଣ ଶ୍ରୀଯୁକ୍ତ ସୁଖ ଦେବ ତଥା ଶ୍ରୀଯୁକ୍ତ ରାଜ ଗୁରୁଙ୍କ ବୀରତ୍ୱ ଓ ବଳୀଦାନର ପ୍ରଶଂସା କରି ସମସ୍ତଙ୍କ ଜ୍ଞାତାର୍ଥେ ଲିପିବଦ୍ଧ କରୁଛି ତଥା ଏହି ଜୀବନଗୁଡ଼ିକ ହରେଇ ଥିବାରୁ ସେମାନଙ୍କ ଶୋକ ସନ୍ତପ୍ତ ପରିବାର ସହ ଶୋକ କରୁଛି । ଏହି କଂଗ୍ରେସର ମତ ଏହା ଯେ ଏହି ତିନୋଟି ଫାଶୀ, ଦଣ୍ଡ କୋହଳ କରିବା ପାଇଁ ଜାତିର ସର୍ବସମ୍ମତ ଦାବୀର ଇଚ୍ଛାକୃତ ଅବଜ୍ଞା ଛଡ଼ା ଅନ୍ୟ କିଛି ନୁହେଁ । ଏହି କଂଗ୍ରେସର ଆହୁରି ମତ ଏହା ଯେ ସରକାର ଦୁଇ ଜାତି ମଧ୍ୟରେ ସଦିଚ୍ଛା ବୃଦ୍ଧି, ଯାହା ବର୍ତ୍ତମାନର ଏହି ଘଡ଼ିସନ୍ଧି ବେଳରେ ନିହାତି ଆବଶ୍ୟକ ବୋଲି ସମସ୍ତେ ମାନୁଛନ୍ତି, ତଥା ଯେଉଁ ଦଳ, ହତାଶା ଭିତରକୁ ଠେଲି ଦିଆ ଯାଇଥିବା ଯୋଗୁଁ, ରାଜନୈତିକ ହିଂସାର ପଥ ଆବୋରି ନେଉଛନ୍ତି ସେମାନଙ୍କୁ ଶାନ୍ତିର ଧାରା ମଧ୍ୟକୁ ଆଣିବାର ଏକ ସୁବର୍ଣ୍ଣ ସୁଯୋଗ ହାତଛଡ଼ା କଲେ ।"[୨୮]

> "ସେମାନଙ୍କର (ଭଗତ ସିଂ ଓ ତାଙ୍କ ସାଥୀମାନଙ୍କର) ଜୀବନକୁ ରକ୍ଷା କରିବା ପାଇଁ ଗାନ୍ଧିଜୀଙ୍କ କଠିନ ପ୍ରୟାସର ଯେଉଁମାନେ ପ୍ରଶଂସା କରୁଥିଲେ ସେମାନେ ତିନି ଶହୀଦଙ୍କ ପାଇଁ ଯେଉଁ ପ୍ରସ୍ତାବ ଉପସ୍ଥାପିତ ହୋଇଥିଲା ସେଥିରେ କେଉଁ ଭାବର ଭାଷା ଗୃହୀତ ହେବ ତାକୁ ନେଇ ସେମାନଙ୍କର କୋପର ଗୋଳା ବର୍ଷଣ କରିବାରେ ଲାଗିଲେ । ... ଭଗତ ସିଂ ପ୍ରସ୍ତାବର ବିବାଦୀୟ ବିଷୟଟି ହେଲା ତାଙ୍କର ଓ ତାଙ୍କ ସାଥୀମାନଙ୍କର ବୀରତ୍ୱ ଓ ବଳିଦାନର ପ୍ରଶଂସା ସର୍ବସାଧାରଣଙ୍କ ଜ୍ଞାତାର୍ଥେ ଲିପିବଦ୍ଧ କଲା ବେଳେ 'ଯଦିଚ୍ଚ ଯେକୌଣସି ଧରଣର ବା ଆକାରର ରାଜନୈତିକ ହିଂସାଠୁଁ ନିଜକୁ ଦୂରେଇ ରଖେ ଓ ତାକୁ ଅପସନ୍ଦ କରେ' ଏହି ବାକ୍ୟାଂଶଟି ସେଥିରେ ରହିବ କି ନାହିଁ ।"[୨୯]

> "କଂଗ୍ରେସ ତାହାର ଅହିଂସା ମତ ସହ ସଙ୍ଗତି ରକ୍ଷା କରି ଯେଉଁ ଟିକକ ଆପତ୍ତି ଲିପିବଦ୍ଧ କରିଥିଲା ତାହା ଥିଲା ସର୍ବନିମ୍ନ, କିନ୍ତୁ ମନ୍ତବ୍ୟରେ ଏହା କହିବା ପାଇ ବାଧ୍ୟ ଯେ ଏହି ବାକ୍ୟାଂଶଟି ଗାନ୍ଧିବାଦ ବିମୁଖୀ ବୟଃକନିଷ୍ଠ ଗୋଷ୍ଠୀକୁ ଏକ ସୁଯୋଗ ଦେଲା ତାକୁ ବାଦ ଦେବା ସକାଶେ ସଂଶୋଧନ ପ୍ରସ୍ତାବ ଆଣିବା ପାଇଁ ।

ସ୍ୱେଚ୍ଛାସେବୀମାନଙ୍କର ସମ୍ମିଳନୀ ସେଇ ବାକ୍ୟାଂଶଟିକୁ ବାଦ ଦେଇ ପ୍ରସ୍ତାବ ଗ୍ରହଣ କଲା, ଏବଂ ପରେ ପ୍ରାଦେଶିକ ସମ୍ମିଳନୀଗୁଡ଼ିକରେ ସେହି ବାକ୍ୟାଂଶଟି ବାଦବିବାଦର ବିନ୍ଦୁ ହୋଇ ରହିଲା ।''[୩୦]

ଏହି ଘଟଣାମାନ ଏହା ପ୍ରମାଣିତ କରେ ଯେ ଅହିଂସା କଂଗ୍ରେସର ସର୍ବସମ୍ମତ ମତ ନଥିଲା, ଯଦିଚ୍ ଗାନ୍ଧିଜୀଙ୍କୁ ବା ତାଙ୍କର ଅହିଂସା ତତ୍ତ୍ୱକୁ କେହି ଖୋଲାଖୋଲି ବିରୋଧ କରୁ ନଥିଲେ । କଂଗ୍ରେସ ଭିତରେ ବେଶ୍ ପରିମାଣର ଲୋକ ଥିଲେ ଯେଉଁମାନେ ଖାଣ୍ଟି ଭାବେ ବ୍ରିଟିଶ୍ ବିରୋଧୀ ଥିଲେ ଓ ବିପ୍ଳବୀମାନଙ୍କୁ ପ୍ରତ୍ୟକ୍ଷ ବା ପରୋକ୍ଷ ସମର୍ଥନ ଦେଇ ଆସୁଥିଲେ ।

ଫାଶୀ ଦିଆ ଯିବାର କିଛି ଦିନ ପୂର୍ବରୁ ଭଗତ ସିଂ କହିଥିଲେ,

''କିନ୍ତୁ ଏହା [ଫାଶୀ ପାଇବାଟା] ତ ଚିତ୍ରର କେବଳ ଗୋଟିଏ ପାଖ । ଅନ୍ୟ ପାଖଟି ମଧ୍ୟ ସମ ଭାବରେ ଉଜ୍ଜ୍ୱଳ । ଦାସତ୍ୱ ସୃଷ୍ଟିକାରୀ ବ୍ରିଟିଶ୍‌ମାନଙ୍କ ପାଇଁ ଜୀବନ୍ତ ଭଗତ ସିଂଙ୍କ ଠାରୁ ବଳି ବିପଦ ସୃଷ୍ଟି କରିବ ମୃତ ଭଗତ ସିଂ । ମୋତେ ଫାଶୀ ଦିଆଯିବା ପରେ ମୋର ବୈପ୍ଳବିକ ଧାରଣାଗୁଡ଼ିକର ସୁବାସ ଆମର ସୁନ୍ଦର ଦେଶର ବାୟୁମଣ୍ଡଳରେ ମିଶି ଯିବ । ତାହା ଯୁବକମାନଙ୍କୁ ମତୁଆଲା କରିଦେବ ଏବଂ ସ୍ୱାଧୀନତା ଓ ବିପ୍ଳବ ପାଇଁ ତାଙ୍କୁ ପାଗଳ କରିଦେବ । ଫଳରେ ବ୍ରିଟିଶ୍ ସାମ୍ରାଜ୍ୟବାଦୀମାନଙ୍କର ବିନାଶ ନିକଟତର ହେବ । ଏହା ହିଁ ମୋର ଦୃଢ଼ ବିଶ୍ୱାସ । ଉତ୍କଣ୍ଠାର ସହ ମୁଁ ସେଇ ଦିନ ପାଇଁ ଅପେକ୍ଷା କରିଛି ଯେଉଁଦିନ ମୁଁ ମୋ ଦେଶ ସେବା ପାଇଁ, ମୋ ଲୋକଙ୍କ ପ୍ରତି ମୋ ସ୍ନେହ ପାଇଁ ସର୍ବୋଚ୍ଚ ପୁରସ୍କାର ଗ୍ରହଣ କରିବି ।''[୩୧]

ବର୍ଷକ ଭିତରେ ଭଗତ ସିଂଙ୍କ ଭବିଷ୍ୟବାଣୀ ସତ ହେଲା । ଭଗତ ସିଂ ଜାତି ପାଇଁ ଏକ ପ୍ରତୀକ ହୋଇଗଲେ । ନେତାଜୀଙ୍କ ଭାଷାରେ,

''ଆଜି ଭଗତ ସିଂ ଜଣେ ବ୍ୟକ୍ତି ନୁହଁନ୍ତି, ସେ ହେଉଛନ୍ତି ଗୋଟିଏ ପ୍ରତୀକ । ସେ ହେଉଛନ୍ତି ବିଦ୍ରୋହୀ ପ୍ରାଣର ପ୍ରତୀକ, ଯାହା ସାରା ଦେଶକୁ କବଳିତ କରିଛି ।''[୩୨]

ଏହି ପ୍ରତୀକଟି ସାହସ ଯୋଗାଇ ଥିଲା ଯୁବ ପିଢ଼ିକୁ ମୃତ୍ୟୁକୁ ବେଖାତିର କରିବା ପାଇଁ, ଜୀବନ ଉତ୍ସର୍ଗ କରିବା ପାଇଁ ପ୍ରେରଣା ଭରି ଦେଇଥିଲା, ଦେଶପ୍ରେମ ଭରିଥିଲା ସେମାନଙ୍କ ହୃଦୟରେ, ଦୃଢ଼ ପ୍ରତିଜ୍ଞ କରିଥିଲା ସେମାନଙ୍କୁ, ସମାଜବାଦୀ ସମାଜ ସ୍ଥାପନ କରିବା ପାଇଁ ଭଗତ ସିଂଙ୍କ ଯେଉଁ ସ୍ୱପ୍ନ ତାହା ସ୍ଥାନ ପାଇଥିଲା ସେମାନଙ୍କ କଳ୍ପନା ରାଜ୍ୟରେ । ଭଗତ ସିଂଙ୍କ ''ଇନ୍‌କିଲାବ୍ ଜିନ୍ଦାବାଦ'' ସାରା ଦେଶର ରଣଧ୍ୱନି ହେଲା । କାରାଗାର, ବେତମାଡ଼, ଲାଠିମାଡ଼ କିଛି ବି ସେମାନଙ୍କ ଦମ୍ଭକୁ ଦୋହଲେଇ ପାରିଲାନି । ୧୯୩୦-୩୨ର ଆନ୍ଦୋଳନ ଅପେକ୍ଷା ଭାରତ ଛାଡ଼ ଆନ୍ଦୋଳନ ଆହୁରି ଜୋର୍‌ଦାର୍ ହୋଇଥିଲା । କିନ୍ତୁ ୧୯୪୫-୪୬ର ଆନ୍ଦୋଳନ

ଅନନ୍ୟ ଥିଲା । ସେତେବେଳେ ଶ୍ରମିକ, କୃଷକ, ଛାତ୍ର, ଯୁବକ, ନୌସେନା, ସ୍ଥଳସେନା, ବାୟୁସେନା, ପୋଲିସ, ସମସ୍ତେ ମିଶି ବ୍ରିଟିଶ୍ ଶାସନକୁ ଏକ ସମ୍ମିଳିତ ଧକ୍କା ଦେବା ପାଇଁ ଆଗଭର ହୋଇଥିଲେ । ଏହା ଥିଲା ଭଗତ ସିଂଙ୍କ ସମସାମୟିକ ପିଢ଼ିର କଥା । କିନ୍ତୁ ପର ପିଢ଼ିର ଲୋକଙ୍କ ଉପରେ ଏହି ଧରଣର ପ୍ରଭାବ ରହିଲାନି । ତାର କାରଣ କଣ ?

'ସନ୍ତ୍ରାସବାଦ' ଶବ୍ଦ ହିଁ ମନରେ ଭୟ ଜାତ କରେ । ଯଦି ଜଣେ ମଣିଷକୁ ସନ୍ତ୍ରାସବାଦୀ କୁହାଯାଏ, ତେବେ ସେପରି ଏକ ମଣିଷ ପାଖରୁ ନିଜକୁ ଦୂରେଇ ରଖିବା ପାଇଁ ଅନ୍ୟ ଜଣେ ମଣିଷ ଚେଷ୍ଟା କରେ । ହିଂସା ପଥର ଯାତ୍ରୀ ବୋଲି, ସତ କହିବାକୁ ହେଲେ ସାମ୍ୟବାଦୀ ପଥର ଯାତ୍ରୀ ବୋଲି, ଗାନ୍ଧିଜୀ ଏବଂ କଂଗ୍ରେସ ତ ଭଗତ ସିଂ ଓ ତାଙ୍କ ସାଥୀମାନଙ୍କର ବିରୋଧ କରୁଥିଲେ । ପରବର୍ତ୍ତୀ କାଳରେ ଅନ୍ୟମାନେ ମଧ୍ୟ ତାଙ୍କୁ ସନ୍ତ୍ରାସବାଦୀ ବୋଲି କହିଥିଲେ । ୧୯୫୯ ମସିହାରେ ପ୍ରକାଶିତ *Jawahar Lal Nehru — A Biography* ରେ ଫ୍ରାଙ୍କ୍ ମୋରେସ୍ ଲେଖିଛନ୍ତି,

> "ଭଗତ ସିଂଙ୍କ ବ୍ୟକ୍ତିତ୍ୱ ଥିଲା ଅନନ୍ୟ ସାଧାରଣ । ସେ ଜଣେ ଅଙ୍ଗୀକାରବଦ୍ଧ ସନ୍ତ୍ରାସବାଦୀ ଥିଲେ । ତାଙ୍କର ଉଦ୍ଦାମ ସାହସ ଥିଲା । ମୁଖମଣ୍ଡଳ ଥିଲା ବୌଦ୍ଧିକ ତଥା ଆକର୍ଷଣୀୟ, ତଥାପି ତହିଁରେ ବହୁ ଆନ୍ଦୋଳନକାରୀଙ୍କ ଛାପ ଥିଲା । ତାଙ୍କର ଭାଷା ଥିଲା ଅସାଧାରଣ ଭାବେ ଭଦ୍ର ।"[୩୩]

ଦେଖନ୍ତୁ ଫାଶୀ ପାଇବାର ଦୁଇ ଦଶକ ପରେ ମଧ୍ୟ ତାଙ୍କୁ "ଅଙ୍ଗୀକାରବଦ୍ଧ ସନ୍ତ୍ରାସବାଦୀ" ବା "avowed terrorist" ବୋଲି ବର୍ଣ୍ଣନା କରା ଯାଉଛି ।

ଭାରତରେ କେତେକ ବାମପନ୍ଥୀ ମଧ୍ୟ ତାଙ୍କୁ "ସନ୍ତ୍ରାସ-ସମାଜବାଦୀ" ("terro-socialists") ହିସାବରେ ମୂଲ୍ୟାୟନ କରନ୍ତି ।

> "ଏହି ସମୟର ନିହାତି ଉଲ୍ଲେଖନୀୟ ଝୁଙ୍କ ଯାହା ବିଶେଷ ଅନୁଧ୍ୟାନ ଯୋଗ୍ୟ ତାହା *ସଂନ୍ତ୍ରାସ-ସମାଜବାଦ* ଭାବେ ପରିଚିତ ହେଲା । ଏହି ଝୁଙ୍କର ପ୍ରତିନିଧିମାନେ ଏକାବେଳେକେ ଶ୍ରମିକ, ଚାଷୀ ଓ ଯୁବକଙ୍କୁ ସଂଗଠିତ କରିବା ତଥା ସମାଜବାଦୀ ଚିନ୍ତାର ପ୍ରସାର କରିବା ସହ ଆଇରିଶ୍ ବିପ୍ଳବୀମାନେ ଡବ୍ଲିନ ଠାରେ କରିଥିବା ଇଷ୍ଟର ବିଦ୍ରୋହ ଢାଞ୍ଚାରେ ସ୍ଥାନୀୟ ବିଦ୍ରୋହର ଯୋଜନା, ଅତ୍ୟାଚାରୀ ସରକାରୀ କର୍ମଚାରୀଙ୍କ ହତ୍ୟା, ଇତ୍ୟାଦି ଯୋଡ଼ିବା ପାଇଁ ଚେଷ୍ଟା କରିଥିଲେ । ସେମାନେ ସୋଭିଯେତ ୟୁନିଅନ ଓ କମ୍ୟୁନିଜମର ଚିନ୍ତାଧାରା ଆଡ଼କୁ ଦୃଢ଼ ଭାବେ ଢଳୁ ଥିଲେ । ତା ସଙ୍ଗେ ସଙ୍ଗେ ସେମାନେ ଭାବୁଥିଲେ ଯେ ସରକାରୀ ଦମନ ବିରୁଦ୍ଧରେ ପ୍ରତିଶୋଧମୂଳକ ସଶସ୍ତ୍ର ପଦକ୍ଷେପ ତଥା ହିଂସାତ୍ମକ କାର୍ଯ୍ୟକଳାପ ପାଇଁ ପ୍ରସ୍ତୁତି ମଧ୍ୟ ସେହି ସମୟର କାର୍ଯ୍ୟକ୍ରମର ଅନ୍ତର୍ଗତ । ଜନଗଣଙ୍କୁ ନିଦରୁ ଉଠେଇବା ପାଇଁ ଏହା ଆବଶ୍ୟକ ବୋଲି ସେମାନେ ଭାବୁଥିଲେ । ଏହି ଭଳିଆ ଏକ କାର୍ଯ୍ୟକ୍ରମର ଅନ୍ତର୍ନିହିତ ଦ୍ୱନ୍ଦ୍ୱ ଦେଖିବାରେ ସେମାନେ ବିଫଳ ହୋଇଥିଲେ ।"[୩୪]

''ଏହି ସମୟରେ ଭଗତ ସିଂ ସମ୍ମୁଖକୁ ଆସିଥିଲେ । 'ସନ୍ତ୍ରାସ-ସମାଜବାଦୀ' ମାନଙ୍କ ମୁଣ୍ଡରେ ଯେଉଁ ବିରୋଧାତ୍ମକ ଟଣାଓଟରା ସେତେବେଳେ ଚାଲିଥିଲା ତାହା ଭଗତ ସିଂଙ୍କ ଠାରେ ବିଶେଷ ରୂପରେ ପ୍ରତିଭାତ ହୋଇଥିଲା । ସେ କମ୍ୟୁନିଷ୍ଟ ହୋଇ ସାରିଥିବା ପୂର୍ବତନ ଗଦରପନ୍ଥୀ ମାନଙ୍କ ପ୍ରଭାବରେ ଆସିଥିଲେ । କମ୍ୟୁନିଷ୍ଟ ନେତାମାନଙ୍କ ସହ ଆଲୋଚ଼ନା ମଧ୍ୟ ସେ କରିଥିଲେ । ନଉଯଓ୍ୱାନ ଭାରତ ସଭା ଜରିଆରେ ସମାଜବାଦୀ ଚିନ୍ତା ପ୍ରସାର କରିବାରେ ସେ ସାହାଯ୍ୟ କରିଥିଲେ । ଏହା ସତ୍ତ୍ୱେ ବି ସେ ପେଟି-ବୁର୍ଜୁଆ ଭାବପ୍ରବଣ ବିପ୍ଳବବାଦର ପ୍ରଭାବରୁ ମୁକ୍ତ ହୋଇ ପାରି ନଥିଲେ ।''[୩୫]

ସନ୍ତ୍ରାସବାଦୀ କହନ୍ତୁ ବା 'ସନ୍ତ୍ରାସ-ସମାଜବାଦୀ' କହନ୍ତୁ ସନ୍ତ୍ରାସବାଦୀ ଗୁଣ ତାଙ୍କ ଠାରେ ଆରୋପିତ ହୋଇ ରହିଲା ।

ଭଗତ ସିଂଙ୍କୁ ସନ୍ତ୍ରାସବାଦୀ କୁହାଯାଇ ପାରିବ କି ନାହିଁ ନିମ୍ନୋକ୍ତ ଯୁକ୍ତିର ବିଚ଼ାର କରି କହନ୍ତୁ । ପଟ୍ଟାଭି ସୀତାରାମାୟା ତାଙ୍କର କଂଗ୍ରେସ ଦଳ ଦ୍ୱାରା ମଞ୍ଜୁରୀ ପ୍ରାପ୍ତ *ଭାରତୀୟ ଜାତୀୟ କଂଗ୍ରେସର ଇତିହାସ* ରେ ଲେଖିଛନ୍ତି,

''ସବୁଠିଁ ଲୁଣ ମରା ଯାଉ ନଥାଇ ପାରେ, କିନ୍ତୁ ସବୁଠିଁ ତ ଡିପୋ ଥିଲା । ଡିପୋଗୁଡ଼ିକୁ ଆମେ ଅକ୍ତିଆର କରି ପାରିଥିଲୁ । 'କିନ୍ତୁ ଏହା ଲୁଟି ନୁହେଁକି?' ଲୋକେ ପଚ଼ାରି ପାରନ୍ତି । ନାଁ । କାରଣ ଗୋଟିଏ ବି ଦାନା ତୁମେ ତୁମ ନିଜ ପାଇଁ ଚାହିଁ ନଥିଲ । ଜୀବନ ପାଇଁ ଲୁଣର ଆବଶ୍ୟକତା ରହିଛି ।''[୩୬]

ନିଜନିଜର ବ୍ୟକ୍ତିଗତ ସ୍ୱାର୍ଥରେ ଯଦି ଏହି କାର୍ଯ୍ୟ କରାଯାଆନ୍ତା ତେବେ ତାକୁ ଲୁଟି କୁହା ଯାଆନ୍ତା । ଯେହେତୁ ଏହି କାର୍ଯ୍ୟ ସର୍ବ ସାଧାରଣଙ୍କ ସ୍ୱାର୍ଥରେ କରାଯାଇ ଥିଲା ତେଣୁ ତାହା ଲୁଟି ନୁହେଁ । ଠିକ୍ ସେହି ଯୁକ୍ତିରେ ଏହା କୁହାଯାଇ ପାରେ ଯେ ଭଗତ ସିଂହ ଓ ତାଙ୍କ ସାଥୀମାନେ ଯାହା କରୁଥିଲେ ତାହା ସେମାନେ ସେମାନଙ୍କର ବ୍ୟକ୍ତିଗତ ସ୍ୱାର୍ଥ ପାଇଁ କରୁ ନଥିଲେ । ସେମାନେ ତାହା ଭାରତର ସାଧାରଣ ମଣିଷମାନଙ୍କ ସ୍ୱାର୍ଥରେ କରୁଥିଲେ । ଭଗତ ସିଂ ମଧ୍ୟ ଠିକ୍ ସେହି କଥା କହିଛନ୍ତି ,

''ଯେତେବେଳେ ଶକ୍ତିକୁ ଆକ୍ରମଣାତ୍ମକ ରୂପରେ ପ୍ରୟୋଗ କରାଯାଇ ଥାଏ, ତେବେ ତାହା 'ହିଂସା' ହୋଇ ଥାଏ । ଏଣୁ ତାହାକୁ ନୈତିକ ଦୃଷ୍ଟିରୁ ବୈଧ କରାଯାଇ ପାରିବନି । ଯଦି ତାହା ଏକ ଯଥାର୍ଥ ଉଦ୍ଦେଶ୍ୟକୁ ଆଗେଇ ନେବା ଅଭିପ୍ରାୟରେ ବ୍ୟବହାର କରାଯାଇ ଥାଏ, ତେବେ ତାର ନୈତିକ ବୈଧତା ଥାଏ । କ୍ଷୟକ୍ଷତି ବିଚ଼ାରକୁ ନନେଇ ଶକ୍ତିକୁ ପରିହାର କରିବା ୟୁଟୋପିୟ...।''[୩୭]

ସେ ଆହୁରି କହିଛନ୍ତି,

''କୌଣସି ସ୍ୱାର୍ଥପର ଉଦ୍ଦେଶ୍ୟ ନଥାଇ ଅବା ଇହଲୋକରେ ବା ପରଲୋକରେ ବିଚ଼ାର-ପୁରସ୍କାରର କାମନା ନଥାଇ ସମ୍ପୂର୍ଣ୍ଣ ନିସ୍ୱାର୍ଥୀ ଭାବେ ସ୍ୱାଧୀନତା ନିମନ୍ତେ ମୁଁ ମୋ ଜୀବନକୁ ସମର୍ପଣ କରି ଦେଇଛି, କାରଣ ଅନ୍ୟ

କୌଣସି କଥା କରିବା ମୋ ପକ୍ଷେ ସମ୍ଭବପର ନଥିଲା । ଯେଉଁଦିନ ଆମ୍ଭେମାନେ ଦେଖିବା ଏହି ମାନସିକତାରେ ଉଦ୍‌ବୁଦ୍ଧ ହୋଇଥିବା ବହୁ ନରନାରୀଙ୍କୁ ଯେଉଁମାନେ ମାନବଜାତିର ସେବା ତଥା ଦୁଃଖୀ ମଣିଷର ମୁକ୍ତି ଉଦ୍ଦେଶ୍ୟରେ ନିଜନିଜକୁ ଉତ୍ସର୍ଗ କରିବା ଛଡ଼ା ଅନ୍ୟ କିଛି କରି ପାରିବେନି, ସେହି ଦିନଟି ସ୍ୱତନ୍ତ୍ରତାର ଏକ ନୂଆ ଯୁଗର ଉଦ୍‌ଘାଟନ କରିବ । ସେମାନେ ଏହି ମାର୍ଗ — ଯାହା ସେମାନଙ୍କର ବ୍ୟକ୍ତିଗତ ଜୀବନ ପାଇଁ ବିପଦସଙ୍କୁଳ ଅଥଚ ସେମାନଙ୍କର ମହତ୍ ଆତ୍ମା ପାଇଁ ଏହା ହିଁ ଏକମାତ୍ର କଳ୍ପନୀୟ ଗୌରବମୟ ମାର୍ଗ — ଅନୁସରଣ କରିବେ ରାଜା ହେବା ପାଇଁ ନୁହେଁ, ଏହି ଧରାପୃଷ୍ଠରେ ବର୍ତ୍ତମାନ ବା ପରଜନ୍ମରେ ଅବା ମୃତ୍ୟୁ ପରେ ସ୍ୱର୍ଗରେ ପୁରସ୍କୃତ ହେବା ଆଶାରେ ନୁହେଁ । ଏହା ସେମାନଙ୍କୁ ଅନୁପ୍ରାଣିତ କରିବନି ଅତ୍ୟାଚାରୀ, ଶୋଷଣକାରୀ ଓ ଦୁର୍ଦ୍ଦାନ୍ତଙ୍କ ବିରୁଦ୍ଧରେ ସଂଗ୍ରାମର ଡାକରା ଦେବା ପାଇଁ, ଅନୁପ୍ରାଣିତ କରିବ କେବଳ ମାନବଜାତିର ବେକ ଉପରୁ ଦାସତ୍ୱର ଯୁଆଳିକୁ କାଢ଼ି ଫୋପାଡ଼ିବାର ଉଦ୍ଦେଶ୍ୟ, ସ୍ୱତନ୍ତ୍ରତା ଓ ଶାନ୍ତି ପ୍ରତିଷ୍ଠାର ଲକ୍ଷ୍ୟ ।"[୩୮]

ଏହି ସଂକ୍ରାନ୍ତରେ ଶ୍ରୀ ଅରବିନ୍ଦଙ୍କ ମତାମତ ଅନୁଧ୍ୟାନ ଯୋଗ୍ୟ । ଶ୍ରୀ ଅରବିନ୍ଦ କେବେ ହେଁ ଅହିଂସା ଆଦର୍ଶ ସପକ୍ଷରେ ନଥିଲେ ଓ ନିଷ୍କ୍ରିୟ ପ୍ରତିରୋଧ ତତ୍ତ୍ୱ (Doctrine of Passive Resistance) ସମ୍ପର୍କରେ ଲେଖିବାକୁ ଯାଇ ସେ କହିଥିଲେ,

"ପ୍ରତିଷ୍ଠିତ ସରକାରମାନଙ୍କର, ବିଶେଷକରି ଯେଉଁମାନେ ନିଜେ ଅତ୍ୟାଚାରୀ ସେମାନଙ୍କର, ଏହା ଏକ ସାଧାରଣ ପ୍ରବୃତ୍ତି ଯେ ଶାସିତ ଜନଗଣ ଓ ସମ୍ପ୍ରଦାୟମାନଙ୍କ ସମସ୍ତ ହିଂସାତ୍ମକ ପଦ୍ଧତିକୁ ଅପରାଧ ଓ ପାପୀଷ୍ଠ ବୋଲି ଛାପା ମାରିବା । ... କିନ୍ତୁ ଯେତେବେଳେ ଖୋଦ୍ ନିଜକୁ ପରୀକ୍ଷାର ସମ୍ମୁଖୀନ ହେବାକୁ ପଡ଼ିଥାଏ, କୌଣସି ଜାତି ଅଦ୍ୟାପି ଅତ୍ୟାଚାରୀମାନଙ୍କର ସାଧୁବାଣୀ ଶୁଣିନାହିଁ, ଏବଂ ମାନବଜାତିର ସାଧାରଣ ବିବେକ ଏହି ଅନିଚ୍ଛାକୁ ସ୍ୱୀକୃତି ଦେଇଛି । କେତେକ ନିର୍ଦ୍ଦିଷ୍ଟ ପରିସ୍ଥିତିରେ ଏକ ବେସାମରିକ ଲଢ଼େଇ ବାସ୍ତବରେ ଏକ ଯୁଦ୍ଧରେ ପରିଣତ ହୋଇଯାଏ ଏବଂ ଯୁଦ୍ଧର ନୈତିକତା ଶାନ୍ତିର ନୈତିକତା ଠାରୁ ଭିନ୍ନ । ଏଭଳି ପରିସ୍ଥିତିରେ ରକ୍ତପାତ ଓ ହିଂସାଠୁଁ ଦୂରେଇ ଯିବା ଏକ ଦୁର୍ବଳତା ଯାହା କଠୋର ଭର୍ତ୍ସନା ଯୋଗ୍ୟ ଯେପରି କୁରୁକ୍ଷେତ୍ରର ଯୁଦ୍ଧଭୂଇଁରେ ଅନନ୍ୟସାଧାରଣ ନରସଂହାର କରିବା କର୍ତ୍ତବ୍ୟରୁ ପଛେଇବାରୁ ଅର୍ଜ୍ଜୁନଙ୍କୁ ଶ୍ରୀକୃଷ୍ଣ ଶୁଣେଇଥିଲେ । ଏକ ଜାତିର ପ୍ରାଣବାୟୁ ହେଉଛି ସ୍ୱତନ୍ତ୍ରତା । ଯେତେବେଳେ ଜୀବନ ଉପରେ ଆକ୍ରମଣ ହୁଏ, ଯେତେବେଳେ ହିଂସାତ୍ମକ ଚାପ ଦ୍ୱାରା ନିଶ୍ୱାସପ୍ରଶ୍ୱାସର ସମସ୍ତ ସୁଯୋଗକୁ ଦମନ କରାଯାଏ, ସେତେବେଳେ ଆତ୍ମରକ୍ଷା ପାଇଁ ଯେ କୌଣସି ଓ ସମସ୍ତ ଉପାୟ ଠିକ୍ ତଥା ଯୁକ୍ତିସଙ୍ଗତ ହୋଇଥାଏ — ଠିକ୍ ଯେପରି ଗୋଟିଏ ଲୋକର ତୋଟି ଚିପା ଯାଉଥିଲା ବେଳେ ତା ତୋଟି ଉପରର ଚାପରୁ ରକ୍ଷା ପାଇବା ପାଇଁ ତାର ଶକ୍ତି ଭିତରେ ଥିବା ଯାହା ଉପାୟ ବି ସେ ଗ୍ରହଣ କରେ ତାହା ନିୟମ ସଙ୍ଗତ ।"[୩୯]

ଭଗତ ସିଂ କହିଛନ୍ତି,

''ମାନବ ଜାତିକୁ ସ୍ନେହ କରିବାରେ ଆମେ କାହାର ବି ପଛରେ ନାହୁଁ । କୌଣସି ବ୍ୟକ୍ତି ପ୍ରତି ଦ୍ୱେଷ ଭାବ ରଖିବା ତ ଦୂରର କଥା, ଆମେ ମଣିଷ ଜୀବନକୁ ଏତେ ପବିତ୍ର ମନେ କରୁ ଯେ ତାହା ଭାଷାରେ କହି ପାରିବୁନି । ନା ଆମେ ଘୃଣ୍ୟ ଦୁଷ୍କର୍ମକାରୀ ଓ, ତେଣୁକରି, ଦେଶ ପାଇଁ ଏକ କଳଙ୍କ ଯେପରି ନକଲି-ସମାଜବାଦୀ ଦିୱାନ ଚମନ ଲାଲ ଆମମାନଙ୍କୁ ବର୍ଣ୍ଣନା କରିଛନ୍ତି ବୋଲି କୁହା ଯାଉଛି, ନା ଆମେମାନେ 'ପାଗଳ' ଯେପରି ଲାହୋରର *ଟ୍ରିବ୍ୟୁନ୍* ଓ ଅନ୍ୟମାନେ ଯେଉଁ ଭଳିଆ ବିଶ୍ୱାସ ଲୋକଙ୍କ ମନରେ ଜନ୍ମାଇବା ପାଇଁ ଚାହୁଁଛନ୍ତି ।''[୪୦]

ତେଣୁ ସେମାନଙ୍କୁ ତ ସନ୍ତ୍ରାସବାଦୀ କୁହାଯାଇ ପାରିବନି, ଭଗତ ସିଂ ନିଜେ ସନ୍ତ୍ରାସବାଦର ମୂଲ୍ୟାୟନ କିପରି କରୁଛନ୍ତି ଦେଖନ୍ତୁ:

''ବୋମାର ରାସ୍ତା ୧୯୦୫ରୁ ଚାଲି ଆସୁଅଛି ଓ ଏହା ବିପ୍ଳବୀ ଭାରତ ଉପରେ ଏକ ଦୁଃଖଭରା ଟିପଣୀ ଅଟେ । ଏହାର ଉପକାର କଣ ଓ ଅପକାର କଣ ବର୍ତ୍ତମାନ ଅନୁଭବ କରା ଯାଇନି । ଆମ ସମାଜରେ ବୈପ୍ଳବିକ ଚିନ୍ତାକୁ ବୁଝିବାରେ ଯେଉଁ ଅଭାବ ରହିଛି, ଆତଙ୍କବାଦ ସେହି ଅଭାବର ଅଭିବ୍ୟକ୍ତି ଅବା ଏକ ଅନୁତାପ । ଏହି ଭାବେ ଏହା ନିଜର ଅସଫଳତାର ସ୍ୱୀକୃତି ମଧ୍ୟ । ଏହାର ଆରମ୍ଭ କାଳରେ ଏଥିରୁ କିଛି କିଛି ଲାଭ ମିଳିଥିଲା । ଏହା ରାଜନୀତିକୁ ଆମୂଳଚୂଳ ବଦଳେଇ ଦେଲା । ନବଯୁବକ ବୁଦ୍ଧିଜୀବୀଙ୍କ ଚିନ୍ତା ଜଗତରେ ଚମକ ସୃଷ୍ଟି କଲା, ଆତ୍ମତ୍ୟାଗର ଭାବନାକୁ ଜ୍ୱଳନ୍ତ ରୂପ ଦେଲା ଏବଂ ଦୁନିଆଁ ଓ ନିଜର ଶତ୍ରୁଙ୍କ ସାମନାରେ ନିଜର ଆନ୍ଦୋଳନର ବାସ୍ତବତା ତଥା ଶକ୍ତି ପ୍ରକଟ କରିବା ପାଇଁ ସୁଯୋଗ ଦେଲା । କିନ୍ତୁ ଏହା ସ୍ୱୟଂ ସମ୍ପୂର୍ଣ୍ଣ ନୁହେଁ । ସବୁ ଦେଶରେ ଏହାର (ଆତଙ୍କବାଦର) ଇତିହାସ ଅସଫଳତାର ଇତିହାସ ଅଟେ । ଫ୍ରାନ୍ସ, ଋଷିଆ, ଜର୍ମାନୀରେ, ବଲକାନ୍ ଦେଶଗୁଡ଼ିକରେ, ସ୍ପେନ୍‌ରେ ସବୁଠି ତାର ସେଇ ଏକା କାହାଣୀ । ଏହାର ପରାଜୟର ବିହନ ଏହାର ଭିତରେ ହିଁ ଥାଏ ।''[୪୧]

''ଆତଙ୍କବାଦର ସଇତାନକୁ ପ୍ରଶଂସା କରିବାର ଆବଶ୍ୟକତା ନାହିଁ । ଆତଙ୍କବାଦୀମାନେ ଯଥେଷ୍ଟ କାମ କରିଛନ୍ତି । ବହୁତ କିଛି ଶିଖେଇ ଦେଇଛନ୍ତି । ଯଦି ଆମେ ଆମର ଉଦ୍ଦେଶ୍ୟ ତଥା ରଣନୀତି ଓ ରଣକୌଶଳକୁ ନେଇ କିଛି ଭୁଲ ନକରୁ ତେବେ ଏହା ଆଜି ବି କିଛିଟା ଲାଭପ୍ରଦ ହେଇପାରେ । ବିଶେଷ କରି ନିରାଶିଆ ବାତାବରଣରେ ଆତଙ୍କବାଦୀ ଉପାୟ ଆମର ପ୍ରଚାର ଅଭିଯାନରେ ସହାୟକ ହୋଇ ପାରେ । କିନ୍ତୁ ଏହା ଫଟାକାବାଜି ଛଡ଼ା ଅନ୍ୟ କିଛି ନୁହେଁ ଏବଂ ଏହାକୁ ବିଶେଷ ସମୟ ପାଇଁ ଓ ବିଶିଷ୍ଟ ଲୋକଙ୍କ ହାତରେ ସୁରକ୍ଷିତ ରଖିବା ଉଚିତ । ବିପ୍ଳବୀମାନଙ୍କୁ ମୂଲ୍ୟହୀନ ଆତଙ୍କବାଦୀ କାର୍ଯ୍ୟକ୍ରମ ଓ ବ୍ୟକ୍ତିଗତ ଆତ୍ମ ବଳିଦାନ ଭଳି ପାପଚକ୍ର ମଧ୍ୟକୁ ଠେଲି ଦେବା ଉଚିତ ନୁହେଁ । ସେମାନେ ସମସ୍ତେ ଉତ୍ସାହବର୍ଦ୍ଧକ ଆଦର୍ଶ ଉଦ୍ଦେଶ୍ୟ ପାଇଁ ନ ମରି, ଉଦ୍ଦେଶ୍ୟ ପାଇଁ ବଞ୍ଚିବା ଆବଶ୍ୟକ ଓ ତାହା ପୁଣି ଲାଭଦାୟକ ଉପାୟରେ, ଯୋଗ୍ୟ ରୂପରେ ଜୀଇଁବାଟା ଉଚିତ ହେବ ।''[୪୨]

''ରାଜନୈତିକ କ୍ଷେତ୍ରରେ ଉଦାରବାଦୀମାନେ ପ୍ରଚଳିତ ସରକାରରେ କେତେକ ସଂସ୍କାର ଆଣିବାକୁ ଚାହିଁଲା ବେଳେ ଚରମପନ୍ଥୀମାନେ ଆଉ କିଛି ଅଧିକା ଦାବୀ କଲେ ଏବଂ ସେହି ଲକ୍ଷ୍ୟ ହାସଲ ପାଇଁ ଚରମ ପନ୍ଥା ଅବଲମ୍ବନ କରିବା ପାଇଁ ପ୍ରସ୍ତୁତ ଥିଲେ । ବିପ୍ଳବୀମାନଙ୍କ ମଧରେ ସେମାନେ ସର୍ବଦା ସକଳ ପ୍ରକାରର ଚରମ ପଦ୍ଧତି ସପକ୍ଷରେ ରହୁଥିଲେ ଓ ସେମାନଙ୍କ ମୁଣ୍ଡରେ ଥିଲା ଗୋଟିଏ ମାତ୍ର ଧାରଣା: ବିଦେଶୀ ଶାସନର ଉତ୍ପାଟନ । ଅବଶ୍ୟ କେତେକ ଏହି ପନ୍ଥା ମାଧମରେ ଜବରଦସ୍ତି କେତେକ ସଂସ୍କାରମୂଳକ କାର୍ଯ୍ୟ ଆଦାୟ କରିବା ସପକ୍ଷରେ ଥିଲେ । ଏହି ସମସ୍ତ ଆନ୍ଦୋଳନକୁ ଯଥାର୍ଥ ବୈପ୍ଳବିକ ଆନ୍ଦୋଳନ ବୋଲି କୁହାଯାଇ ପାରିବ ନାହିଁ ।''[୪୩]

''ସାମ୍ରାଜ୍ୟବାଦୀମାନଙ୍କୁ ଗାଦିରୁ ହଟେଇବା ପାଇଁ ଭାରତର ଏକମାତ୍ର ହତିଆର ହେଉଛି ଶ୍ରମିକ ବିପ୍ଳବ । ଅନ୍ୟ କୌଣସି ଉପାୟ ଏହି ଉଦ୍ଦେଶ୍ୟକୁ ପୂରଣ କରି ପାରିବନି । ବିଭିନ୍ନ ବିଚାର ଧାରାର ସମସ୍ତ ରାଷ୍ଟ୍ରବାଦୀମାନେ ଗୋଟିଏ ଉଦ୍ଦେଶ୍ୟକୁ ନେଇ ଏକମତ ଯେ ସାମ୍ରାଜ୍ୟବାଦୀମାନଙ୍କ ନିକଟରୁ ସ୍ୱାଧୀନତା ହାସଲ ହେଉ । କିନ୍ତୁ ସେମାନଙ୍କୁ ଏହା ବି ବୁଝିବା ଆବଶ୍ୟକ ଯେ ବିଦ୍ରୋହୀ ଜନତା ହେଉଛନ୍ତି ସେମାନଙ୍କର ଆନ୍ଦୋଳନର ଚାଳକ ଶକ୍ତି ଓ ତାଙ୍କରି ଲଢୁଆ କାର୍ଯ୍ୟକ୍ରମରୁ ହିଁ ସଫଳତା ହାସଲ ହେବ । ଏହାର ସରଳ ସମାଧାନ ହେଇ ପାରିବନି । ଏଣୁ ନିଜକୁ ଛଳନାର ବଶବର୍ତ୍ତୀ କରି ସେମାନେ ସେହି ଆଡ଼କୁ ଡେଇଁ ପଡ଼ୁଛନ୍ତି ଯାହାକୁ ସେମାନେ କଳ୍ପିତ ଅଥଚ୍ ଝଟପଟ କାମ କରୁଥିବା ପ୍ରଭାବଶାଳୀ ଚିକିତ୍ସା ବୋଲି ମାନନ୍ତି — ଅର୍ଥାତ୍ କେତେକ ଏହି ଭଳିଆ ଦୃଢ଼ ଆଦର୍ଶବାଦୀ ରାଷ୍ଟ୍ରବାଦୀମାନଙ୍କ ସଶସ୍ତ୍ର ବିଦ୍ରୋହ ଜରିଆରେ ବିଦେଶୀ ଶାସନକୁ ଓଲଟେଇ ସମାଜବାଦୀ ରାସ୍ତାରେ ଦେଶର ପୁନର୍ଗଠନ ଚାହାଁନ୍ତି । ସେମାନେ ସମୟର ବାସ୍ତବିକତା ଆଡ଼କୁ ଟିକିଏ ଲଇଁପଡ଼ି ଦେଖିବା ଆବଶ୍ୟକ । ବହୁ ପରିମାଣରେ ଅସ୍ତ୍ରଶସ୍ତ୍ର ହସ୍ତଗତ ହେଉନି । ପୁଣି ଲଢୁଆ ଜନତାଙ୍କ ନିକଟରୁ ଅଲଗା ହେଇ ଏକ ଅଶିକ୍ଷିତ ଗୋଷ୍ଠୀର ବିଦ୍ରୋହ ସଫଳ ହେବାର ସମ୍ଭାବନା ଏ ଯୁଗରେ ନାହିଁ । ରାଷ୍ଟ୍ରବାଦୀମାନଙ୍କର ସଫଳତା ପାଇଁ ସେମାନଙ୍କର ସମଗ୍ର ଜାତିଟା ଆନ୍ଦୋଳନ ମଧକୁ ଆସିବା ଉଚିତ, ବିଦ୍ରୋହ ପାଇଁ ଠିଆ ହେବା ଉଚିତ ।''[୪୪]

''ଆଇରିଶ୍ ଉଦାହରଣ ଏଠି ପ୍ରଯୁଜ୍ୟ ନୁହେଁ । ଏହି ଚେତାବନୀ ମୁଁ ଦେବା ପାଇଁ ଚାହୁଁଛି ।

''ଜଣେ ଦୁଇ ଜଣଙ୍କର ଆତଙ୍କବାଦୀ କାରବାର ଆୟରଲେଣ୍ଡରେ ନଥିଲା, ବରଂ ଏହା ରାଷ୍ଟ୍ରୀୟ ସ୍ତରରେ ଜନସାଧାରଣଙ୍କର ବିଦ୍ରୋହ ଥିଲା ଯହିଁରେ ବନ୍ଧୁକଧାରୀମାନେ ଆଖପାଖର ପରିଚିତ, ସମଦୁଃଖୀ ତଥା ସହାନୁଭୂତିଶୀଳ ଲୋକଙ୍କ ମଧରେ ମିଳେଇ ଯାଉଥିଲେ । ସେମାନଙ୍କୁ ଅତି ସହଜରେ ଅସ୍ତ୍ରଶସ୍ତ୍ର ମିଳି ଯାଉଥିଲା କାରଣ ଆମେରିକାରେ ଥିବା ଆଇରିଶ୍ ଲୋକମାନେ ଅଗାଧ ଆର୍ଥିକ ସାହାଯ୍ୟ ଦେଉଥିଲେ । ଭୌଗଳିକ ସ୍ଥିତି ବି ଏମିତି ଯୁଦ୍ଧ ପାଇଁ ସୁବିଧାଜନକ ଥିଲା । ତା ସତ୍ତ୍ୱେ ଆୟରଲେଣ୍ଡକୁ ନିଜର ଆନ୍ଦୋଳନର ଉଦ୍ଦେଶ୍ୟଗୁଡ଼ିକ ଅପୂର୍ଣ୍ଣ

ରହିଥିଲେ ବି ସନ୍ତୋଷ ହେବାକୁ ପଡ଼ିଥିଲା । ଏହା ଆଇରିଶ୍ ଲୋକଙ୍କର ଦାସତ୍ୱକୁ ତ କମ୍ କରିଥିଲା, କିନ୍ତୁ ଆଇରିଶ୍ ଶ୍ରମିକ ଶ୍ରେଣୀକୁ ପୁଞ୍ଜିପତିମାନଙ୍କ ଛଞ୍ଚାଇରୁ ମୁକ୍ତ କଲାନି । ଭାରତକୁ ଆୟରଲେଣ୍ଡ ନିକଟରୁ ଶିଖିବାକୁ ହେବ ।''[୪୫]

''ଆଚ୍ଛା, ଆମର ଆଶା ଅନୁସାରେ ହତିଆର ଯଦି ବି ସହଜରେ ମିଳିଯାଏ ଓ ଆମେ ଯଦି ପୁରା ଦମ୍‌ରେ ଲଢୁଁ ଯେପରି ଇତିହାସରେ ଆଗରୁ କେବେ କେଉଁଠି ସେପରି ଲଢ଼େଇ ହୋଇ ନଥିବ, ତେବେ ବି ଆତଙ୍କବାଦ ଅତି ବେଶିରେ ସାମ୍ରାଜ୍ୟବାଦୀ ଶକ୍ତିକୁ ରାଜିନାମା ପାଇଁ ହିଁ ବାଧ୍ୟ କରିପାରେ । ଏହି ଭଳିଆ ରାଜିନାମା ଆମର ଉଦ୍ଦେଶ୍ୟପୂର୍ଣ୍ଣ ସ୍ୱାଧୀନତା ଠାରୁ ସର୍ବଦା କାହିଁ ନା କାହିଁ ଦୂରରେ ରହିବ । ଏହି ଭାବେ ଆତଙ୍କବାଦ ଏକ ରାଜିନାମା, ସଂସ୍କାରର ଏକ କିସ୍ତି ଚିପୁଡ଼ା ଚିପୁଡ଼ି ବାହାର କରି ପାରେ ଏବଂ ଏହା ହିଁ ହାସଲ କରିବା ପାଇଁ ଗାନ୍ଧୀବାଦ ମଧ୍ୟ ଚାପ ପକାଉଛି ।''[୪୬]

''ଆମ ଆଗ ପିଢ଼ିର ଲୋକମାନେ ବିଶେଷ ଭାବେ ପ୍ରଭାବିତ ହେଉଥିଲେ କେବଳ ରୋମାଞ୍ଚକର ହିଂସାତ୍ମକ ପଦ୍ଧତି ଦ୍ୱାରା । ଆମ ପାଇଁ ତାହା ବଦଳି ଗଲା । ତାର ସ୍ଥାନ ନେଲା ଗୁରୁତ୍ୱପୂର୍ଣ୍ଣ ଚିନ୍ତାଧାରା । ଆଉ ଏଣିକି ରହସ୍ୟବାଦ ନୁହେଁ କି ଅନ୍ଧବିଶ୍ୱାସ ନୁହେଁ । ବାସ୍ତବବାଦ ହେଲା ଆମର ଝୁଙ୍କ । ଭୟଙ୍କର ଆବଶ୍ୟକତା କ୍ଷେତ୍ରରେ ଶକ୍ତିର ପ୍ରୟୋଗ ଯଥାର୍ଥ ଅଥଚ୍ ସମସ୍ତ ଗଣ ଆନ୍ଦୋଳନ ପାଇଁ ଅହିଂସା ନୀତି ଅପରିହାର୍ଯ୍ୟ ।''[୪୭]

''ଏହା କହିବାର କୌଣସି ଆବଶ୍ୟକତା ନାହିଁ ଯେ ଆମେ ଆତଙ୍କବାଦ ସହ ପୁରାପୁରି ସମ୍ପର୍କ ତୁଟେଇ ଦେଉନୁ । ଶ୍ରମିକ ବିପ୍ଳବର ଦୃଷ୍ଟିକୋଣରୁ ଆମେ ଏହାର ରୀତିନୀତିର ସମ୍ପୂର୍ଣ୍ଣ ମୂଲ୍ୟାୟନ ଚାହୁଁଛୁ ।''[୪୮]

ପୁଣି ସେ କହିଛନ୍ତି,

'' ... ଏକ ସୈନ୍ୟ ବିଭାଗ ସଂଗଠିତ କରିବା ଆବଶ୍ୟକତା ରହିଛି । ଏହା ଅତି ଜରୁରି । ବେଳେ ବେଳେ ଏକ ସୈନ୍ୟ ବିଭାଗର ଅଭାବ ଅତି ଭୟଙ୍କର ଭାବେ ଅନୁଭବ କରାଯାଏ । କିନ୍ତୁ ଠିକ୍ ସେହି ଆବଶ୍ୟକ କାଳରେ ହିଁ ଏକ ସୈନ୍ୟ ବାହିନୀ ଗଠନ କରିବା ପ୍ରକ୍ରିୟା ଆରମ୍ଭ କରି ତା ପାଇଁ ଯଥେଷ୍ଟ ପରିମାଣର ଯୁଦ୍ଧ ସାମଗ୍ରୀ ସଂଗ୍ରହ କରି ଶତ୍ରୁ ସହ ଦକ୍ଷତାର ସହ ଲଢ଼େଇ କରିବା ପାଇଁ ପ୍ରସ୍ତୁତ କରିବା ସମ୍ଭବ ନୁହେଁ । ସମ୍ଭବତଃ ଏହି ବିଷୟଟିର ହିଁ ଅତି ଯତ୍ନର ସହ ବ୍ୟାଖ୍ୟା କରିବା ଆବଶ୍ୟକତା ରହିଛି । ଏହି ବିଷୟଟିକୁ ନେଇ ହିଁ ମୋତେ ଭୁଲ ବୁଝିବାର ବହୁତ ସମ୍ଭାବନା ରହିଛି । ଏମିତି ଦେଖିବାକୁ ତ ମୁଁ ସନ୍ତ୍ରାସବାଦୀ ଭଳି କାମ କରିଛି । କିନ୍ତୁ ମୁଁ ଜଣେ ସନ୍ତ୍ରାସବାଦୀ ନୁହେଁ । ମୁଁ ଜଣେ ବିପ୍ଳବୀ, ଯାହା ନିକଟରେ ଏକ ଦୀର୍ଘ କାର୍ଯ୍ୟକ୍ରମର ନିର୍ଦ୍ଦିଷ୍ଟ ଧାରଣାମାନ ରହିଛି ... । ମୁଁ କାଳକୋଠରୀରେ ରହିବା ଫଳରେ ମୋ ମନରେ କେତେକ ନିର୍ଦ୍ଦିଷ୍ଟ ଧରଣର ପ୍ରତିକ୍ରିୟା ସୃଷ୍ଟି ହୋଇଛି ବୋଲି ରାମ ପ୍ରସାଦ ବିସମିଲ୍ ଆରୋପ କଲା ଭଳି ମୋର ଅନ୍ୟ 'ଯୋଦ୍ଧା ସାଥୀମାନେ' ମଧ୍ୟ ଆରୋପ କରି ପାରନ୍ତି । କିନ୍ତୁ ତାହା ସତ୍ୟ ନୁହେଁ । ମୁଁ ବାହାରେ ଥିଲା ବେଳେ ମୋ ମୁଣ୍ଡରେ ଯେଉଁ ଧାରଣାସମୂହ ଥିଲା ଆଜି ମଧ୍ୟ ତାହା ଅଛି, ସେଇ ବିଶ୍ୱାସ ଅଛି, ସେଇ ଆନ୍ତରିକତା ଅଛି ଓ ସେଇ ବୃତ୍ତି ଅଛି, ସମ୍ଭବତଃ —

ସମ୍ଭବତଃ କାହିଁକି, ନିଶ୍ଚିତ ରୂପେ — ତାଠାରୁ ଅଧିକ ଭଲ ଭାବେ । ତେଣୁ ମୋ ଲେଖା ପଢ଼ିଲା ବେଳେ ହୁସିଆର୍ ରହିବା ପାଇଁ ମୁଁ ମୋ ପାଠକମାନଙ୍କୁ ସତର୍କ କରି ଦେଉଛି । ଯାହା ଲେଖାଯାଇ ନାହିଁ ତାହା ଦୁଇ ଧାଡ଼ି ମଝିରେ ପଢ଼ିବା ପାଇଁ ଚେଷ୍ଟା କରିବା ଉଚିତ ନୁହେଁ । ମୋର ସମସ୍ତ ଶକ୍ତି ଖଟେଇ ମୁଁ ଏହା ଘୋଷଣା କରେ ଯେ ମୁଁ ଜଣେ ସନ୍ତ୍ରାସବାଦୀ ନୁହେଁ ଏବଂ, ମୋର ବୈପ୍ଳବିକ ଜୀବନର ସମ୍ଭବତଃ ପ୍ରାରମ୍ଭ କାଳକୁ ଛାଡ଼ି ଦେଲେ, କେବେ ନଥିଲି । ମୋର ହୃଦବୋଧ ହୋଇଛି ଯେ ସେହି ପଦ୍ଧତିଗୁଡ଼ିକ ମାଧ୍ୟମରେ ଆମର କିଛି ଲାଭ ହେବନି । ହିନ୍ଦୁସ୍ଥାନ ସୋସିଆଲିଷ୍ଟ ରିପବ୍ଲିକାନ୍ ଏସୋସିଏସନ୍‌ର ଇତିହାସରୁ ଯେ କେହି ଏହାର ବିଚାର କରିପାରେ । ଗୋଟିଏ ଲକ୍ଷ୍ୟ ଆଡ଼କୁ ଆମର ସମସ୍ତ କାର୍ଯ୍ୟକଳାପ ପରିଚାଳିତ ହେଉଥିଲା, ଅର୍ଥାତ, ଏକ ମହାନ ଆନ୍ଦୋଳନ ସହ ଆମେମାନେ ନିଜକୁ ଏକାକାର କରି ଦେଉଥିଲୁ ତାହାର ସେନା ବାହିନୀ ଭାବେ । କେହି ଯଦି ମୋତେ ଭୁଲ ବୁଝି ଥାଆନ୍ତି, ତେବେ ତାଙ୍କର ସେହି ଧାରଣାର ସଂଶୋଧନ କରନ୍ତୁ । ମୋର କହିବାର ଅର୍ଥ ଏହା ନୁହେଁ ଯେ ବୋମା ଓ ପିସ୍ତଲର ଆଉ ଆବଶ୍ୟକତା ନାହିଁ, ବରଂ ଠିକ୍ ତାର ବିପରିତ । ମୁଁ କହିବାର ଅର୍ଥ ଏହା ଯେ ଖାଲି ବୋମା-ଫୋପଡ଼ା କେବଳ ଅନୁପଯୋଗୀ ନୁହେଁ, ବେଳେ ବେଳେ କ୍ଷତିକାରକ ମଧ୍ୟ । ପାର୍ଟିର ସୈନ୍ୟ ବିଭାଗ ତା ଅଧୀନରେ ଥିବା ଯୁଦ୍ଧସାମଗ୍ରୀକୁ ଜରୁରି କାଳରେ ବ୍ୟବହାରକ୍ଷମ ଅବସ୍ଥାରେ ସର୍ବଦା ରଖିବା ଉଚିତ । ପାର୍ଟିର ରାଜନୈତିକ କାର୍ଯ୍ୟରେ ସହାୟତା କରିବା ଉଚିତ । ସ୍ୱାଧୀନ ଭାବେ ଏହା କାର୍ଯ୍ୟ କରିବନି, କରିବା ମଧ୍ୟ ଉଚିତ ନୁହେଁ ।''[୪୯]

ସେ ସନ୍ତ୍ରାସବାଦୀ ନଥିଲେ ବୋଲି ବାରମ୍ବାର କହିଛନ୍ତି, କିନ୍ତୁ ତାଙ୍କ କଥାକୁ କେହି କର୍ଣ୍ଣପାତ କରି ନାହାଁନ୍ତି । ସେ ନିଜକୁ ଜଣେ ବିପ୍ଳବୀ ବୋଲି କହୁଥିଲେ । ଆମର ଶତ୍ରୁ ବ୍ରିଟିଶ୍ ସାମ୍ରାଜ୍ୟବାଦୀମାନେ ତାଙ୍କୁ ବିପ୍ଳବୀ ନ କହି ସନ୍ତ୍ରାସବାଦୀ କହି ପାରନ୍ତି — କହିବାଟା ସ୍ୱାଭାବିକ, କିନ୍ତୁ ଆମେ ତାଙ୍କୁ ସନ୍ତ୍ରାସବାଦୀ କହିବା ଅତି ଲଜ୍ଜାକର କଥା । ସେ କହିଛନ୍ତି,

''ଆମ ଚିନ୍ତାଧାରାର ଲୋକେ ତାଙ୍କର ନିଜର ନିରୀହ ଲୋକଙ୍କ ଉପରକୁ ବୋମା ଫୋପାଡ଼ନ୍ତିନି ।''[୫୦]

ତା ମାନେ ବ୍ରିଟିଶ୍ ଚସମାରେ ଆମ ନିଜର ଇତିହାସକୁ ଦେଖିବା ଅଭ୍ୟାସ ଆମର ଆହୁରି ଯାଇନି । ଏହା ଫଳରେ ଭଗତ ସିଂଙ୍କୁ ତାଙ୍କ ନିଜ ସ୍ୱରୂପରେ ଉପସ୍ଥାପିତ କରା ଯାଇନି ଓ ତାଙ୍କ ଚିନ୍ତାଧାରାକୁ ଲୋକଙ୍କ ନିକଟରୁ ଦୂରେଇ ରଖା ଯାଇଛି ।

ଅବଶ୍ୟ ସେ ପାର୍ଟିର ସୈନ୍ୟ ବିଭାଗ କଥା କହୁଛନ୍ତି । ଶତ୍ରୁର ମୁକାବିଲା ପାଇଁ ଏହାର ଅନିବାର୍ଯ୍ୟ ଆବଶ୍ୟକତା କେତେ ତାହା ଇଣ୍ଡୋନେସିଆ କମ୍ୟୁନିଷ୍ଟ ପାର୍ଟିର ଇତିହାସରୁ ମିଳେ । ଅଣକମ୍ୟୁନିଷ୍ଟ ଦେଶମାନଙ୍କ ମଧ୍ୟରେ ଇଣ୍ଡୋନେସିଆ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ସଂଖ୍ୟା ଥିଲା ସବୁଠାରୁ ବେଶି । ଭାରତର କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ସଂଖ୍ୟା ମଧ୍ୟ ସେତେବେଳେ ସେତିକି ନଥିଲା । କିନ୍ତୁ ୧୯୬୫ ମସିହାରେ ସୁକର୍ଣ୍ଣଙ୍କୁ ତଡ଼ି

ସୁହାର୍ତ୍ତୋ ଯେତେବେଳେ ଶାସନ ଗାଦିକୁ ଆସିଲେ, କମ୍ୟୁନିଷ୍ଟମାନଙ୍କ ଉପରେ ଏପରି ମାଡ଼ ପଡ଼ିଲା ଯେ ସେମାନେ ତାହାର ମୁକାବିଲା କରି ପାରିଲେନି । ଦଶ ଲକ୍ଷ କମ୍ୟୁନିଷ୍ଟଙ୍କର ଗଣହତ୍ୟା ହୋଇଥିଲା । ଫଳରେ ଇଣ୍ଡୋନେସିଆ କମ୍ୟୁନିଷ୍ଟ ପାର୍ଟିଟି ଆଜି ଲୁପ୍ତପ୍ରାୟ । ବ୍ରିଟିଶ ଶାସନ ଆଡୁ ସେଇ ଭଳିଆ ପରିସ୍ଥିତି ଜାତ ହୋଇଥିଲେ ତାର ମୁକାବିଲା କରିବା ପାଇଁ ପାର୍ଟିରେ ଏକ ସୈନ୍ୟବାହିନୀ ଗଠନ କରିବା କଥା ଭଗତ ସିଂ କହିଥିଲେ । ସକଳ ପ୍ରକାରର ପରିସ୍ଥିତିକୁ ସାମନା କରିବା ପାଇଁ ପାର୍ଟିକୁ ପ୍ରସ୍ତୁତ କରି ରଖିବା ଥିଲା ଭଗତ ସିଂଙ୍କର ଉଦ୍ଦେଶ୍ୟ ।

ଭଗତ ସିଂଙ୍କୁ କେହି କେହି ସନ୍ତ୍ରାସବାଦୀ ବୋଲି କହିଲେ ମଧ୍ୟ ତାଙ୍କ ଜୀବନ ତଥାକଥିତ ସନ୍ତ୍ରାସବାଦରୁ ଆରମ୍ଭ ହୋଇ ତାରି ପାଖେ ହିଁ ଶେଷ ହୋଇ ନଥିଲା । ତାଙ୍କ ଚିନ୍ତାର ଆରମ୍ଭ ଓ ଶେଷ ସନ୍ତ୍ରାସବାଦ ନଥିଲା । କାରଣ ସେ ତାଙ୍କ ଜୀବନର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ସନ୍ତ୍ରାସବାଦୀ ନଥିଲେ । ତାଙ୍କ ରାଜନୈତିକ ଜୀବନର ପ୍ରଥମ ଅବସ୍ଥାରେ ଦେଶର ରାଜନୈତିକ ବାତାବରଣ ତାଙ୍କୁ ସନ୍ତ୍ରାସବାଦ ଆଡ଼କୁ ଟାଣି ନେଇଥିଲା । ସେ କହୁଛନ୍ତି,

> ''ମୋର ସମସ୍ତ ଶକ୍ତି ଖଟେଇ ମୁଁ ଏହା ଘୋଷଣା କରେ ଯେ ମୁଁ ଜଣେ ସନ୍ତ୍ରାସବାଦୀ ନୁହେଁ ଏବଂ, ମୋର ବୈପ୍ଳବିକ ଜୀବନର ସମ୍ଭବତଃ ପ୍ରାରମ୍ଭ କାଳକୁ ଛାଡ଼ି ଦେଲେ, କେବେ ନଥିଲି ।''[୬୧]

> ''ଏମିତି ଦେଖିବାକୁ ତ ମୁଁ ସନ୍ତ୍ରାସବାଦୀ ଭଳି କାମ କରିଛି । କିନ୍ତୁ ମୁଁ ଜଣେ ସନ୍ତ୍ରାସବାଦୀ ନୁହେଁ । ମୁଁ ଜଣେ ବିପ୍ଳବୀ, ଯାହା ନିକଟରେ ଏକ ଦୀର୍ଘ କାର୍ଯ୍ୟକ୍ରମର ନିର୍ଦ୍ଦିଷ୍ଟ ଧାରଣାମାନ ରହିଛି ...।''[୬୨]

ତାହା ଥିଲା ତାଙ୍କ ଜୀବନର ପ୍ରଥମ ଅବସ୍ଥାର କଥା, ଯେତେବେଳେ ସେ ଅନ୍ୟ ନେତାମାନଙ୍କର ଅନୁଗାମୀ ଥିଲେ । କିନ୍ତୁ ତାହା ବେଶି ଦିନ ଯାଇ ନଥିଲା । ସେ ଜଣେ ସ୍ୱାଧୀନ ଚେତା ମଣିଷ ଓ ବିପ୍ଳବୀ ଥିଲେ । ତାଙ୍କ ମତରେ,

> ''ସମାଲୋଚନା ଓ ସ୍ୱାଧୀନ ଚିନ୍ତା, ଏହି ଦୁଇଟି ହେଉଛି ଜଣେ ବିପ୍ଳବୀର ଅପରିହାର୍ଯ୍ୟ ଗୁଣ ।''[୬୩]

ଏହି ଗୁଣ ବଳରେ ସେ ଅନୁଗମନ କରୁଥିବା ନେତାମାନଙ୍କର ଭଲ ଓ ମନ୍ଦ ଉଭୟ ଦିଗ, ସେମାନେ ସବଳ କେଉଁଠି ଦୁର୍ବଳ କେଉଁଠି, ଠିକ୍ ଭାବେ ସେ ବୁଝି ପାରିଥିଲେ । ତେଣୁ ସେଇଠୁଁ ତାଙ୍କର କୌଣସି ନେତାଙ୍କର ଅନୁଗାମୀ ହେବା ଅବସ୍ଥାର ଅନ୍ତ ହୋଇଥିଲା । ଆଦର୍ଶଗତ ବିକାଶ ମାର୍ଗରେ ସେ ଆଗେଇ ଥିଲେ । ସ୍ୱାଧୀନ ଭାବେ ଚିନ୍ତା କରିବା ପରେ ଭାରତର ଜନଗଣଙ୍କ ସମସ୍ୟାବଳୀର ଅନୁଧ୍ୟାନ ଓ ସେଗୁଡ଼ିକର ସମାଧାନ ପାଇଁ ପଥର ସନ୍ଧାନ ମଧ୍ୟଦେଇ ତାଙ୍କର ଆଦର୍ଶଗତ ବିକାଶ ଘଟିଥିଲା । ଗାୟତ୍ରୀ ମନ୍ତ୍ର ପାଠରୁ ଖାଣ୍ଟି ନାସ୍ତିକବାଦ ପର୍ଯ୍ୟନ୍ତ ଏକ ସୁଦୀର୍ଘ ପଥ, ମଣିଷର

ସମସ୍ୟାର ସମାଧାନ ପାଇଁ ଦୈବ ହସ୍ତକ୍ଷେପ ଭଳି ପରମ୍ପରାଗତ ଚିନ୍ତା ଠାରୁ ମଣିଷର ସମସ୍ୟାର ସମାଧାନରେ ମଣିଷର ହସ୍ତକ୍ଷେପ ଭଳି ବାସ୍ତବବାଦୀ ଚିନ୍ତା ପର୍ଯ୍ୟନ୍ତ ଏକ ସୁଦୀର୍ଘ ପଥ । ସନ୍ତ୍ରାସବାଦ ଏହି ପଥର ପ୍ରାରମ୍ଭ କାଳରେ ଏକ ଆକସ୍ମିକ ଚିନ୍ତା ମାତ୍ର, ଆଗକୁ ରହିଛି ସୁଦୀର୍ଘ ଭବିଷ୍ୟତର ଚିନ୍ତା । ଭଗତ ସିଂଙ୍କ ଉପରେ ମରା ଯାଉଥିବା ଏହି ସନ୍ତ୍ରାସବାଦୀ ଛାପା ତାଙ୍କୁ ବୁଝିବାରେ ବାଧା ସୃଷ୍ଟି କରିଛି, ତାଙ୍କ ଚିନ୍ତାର ପ୍ରସାରଣରେ ବାଧା ସୃଷ୍ଟି କରିଛି ।

ବୁଦ୍ଧଦେବଙ୍କ ଅହିଂସା ଓ ଗାନ୍ଧିଜୀଙ୍କ ଅହିଂସା ମଧ୍ୟରେ ତଫାତ ଏତିକି ଯେ ଗାନ୍ଧିଜୀ ଅହିଂସାକୁ ଏକ ରାଜନୈତିକ ଅସ୍ତ୍ର ହିସାବରେ ବ୍ୟବହାର କରିଥିଲେ । ଭଗତ ସିଂଙ୍କ ଯାହା କିଛି ବକ୍ତବ୍ୟ ଗାନ୍ଧିଜୀଙ୍କ ଏହି ରାଜନୈତିକ ଅସ୍ତ୍ର ବିରୁଦ୍ଧରେ, ବୁଦ୍ଧଦେବଙ୍କ ଅହିଂସା ବିରୁଦ୍ଧରେ ନୁହେଁ ।

## କେବଳ ସ୍ୱାଧୀନତା ସଂଗ୍ରାମୀ?

ଭଗତ୍ ସିଂଙ୍କ ସଂପର୍କରେ ଆଉ ଗୋଟିଏ ଛାପାମରା ବର୍ଣ୍ଣନା ହେଲା: ସେ ଜଣେ ସ୍ୱାଧୀନତା ସଂଗ୍ରାମୀ ଥିଲେ ଓ ଦେଶର ସ୍ୱାଧୀନତା ପାଇଁ ସେ ଆତ୍ମବଳୀ ଦେଇଥିଲେ । କିର୍‌ପାଲ୍ ସିଂ ନାରଙ୍ଗ ଭଗତ ସିଂଙ୍କ ପ୍ରଶଂସା କରିବାକୁ ଯାଇ କହିଛନ୍ତି,

> ''ସେ ଥିଲେ ଅସାଧାରଣ ରାଜନୈତିକ ବିଜ୍ଞତା ଓ ସାମର୍ଥ୍ୟ ଥିବା ଏକ ଯୁବକ, ଯିଏ ଦାସତ୍ୱରେ ସଢୁଥିବା ଭାରତର ଆତ୍ମାକୁ ଆଲୋଡ଼ିତ କରିଥିଲେ ଏବଂ ପୃଥିବୀର ସବୁଠାରୁ ବଳି ସାମ୍ରାଜ୍ୟବାଦୀ ଶକ୍ତିର ବାହୁବଳକୁ ଆହ୍ୱାନ କରିଥିଲେ । ସେ ଥିଲେ ଜଣେ ଯଥାର୍ଥ ତଥା ଉତ୍କୃଷ୍ଟ ଦେଶପ୍ରେମୀ । ତାଙ୍କର ମାତୃଭୂମୀର ମୁକ୍ତି ପାଇଁ ସେ ଯେଉଁ ହୃଦୟସ୍ପର୍ଶୀ ବଳିଦାନ ଦେଲେ ତାହା ତତ୍କାଳୀନ ଯୁବ ମାନସକୁ ବିଦ୍ୟୁତ ବେଗରେ ଆନ୍ଦୋଳିତ କରିଥିଲା । ସ୍ୱାଧୀନ ଭାରତ ତାଙ୍କ ଠାରେ ଗଭୀର ଭାବେ କୃତଜ୍ଞତା ପ୍ରକାଶ କରେ, ତଥା ତାଙ୍କର ବୀରତ୍ୱପୂର୍ଣ୍ଣ କାର୍ଯ୍ୟାବଳୀର କାହାଣୀ କେବେ ବି ଭୁଲି ପାରିବନି ।''[୫୪]

କରଣ ସିଂ କହିଛନ୍ତି,

> ''ଭାରତକୁ ସ୍ୱାଧୀନ କରିବା ଉଦ୍ଦେଶ୍ୟରେ ଯେଉଁମାନେ ନିଜ ନିଜ ଜୀବନକୁ ଉତ୍ସର୍ଗ କରି ଦେଇଥିଲେ ସେମାନଙ୍କ ମଧ୍ୟରେ ଥିବା ସାହସୀତମ ତଥା ଅତି ଚମକପ୍ରଦ ବ୍ୟକ୍ତିତ୍ୱ ମଧ୍ୟରୁ ଜଣେ ଥିଲେ ଭଗତ ସିଂ । ସେ ଥିଲେ ପଞ୍ଜାବର ସନ୍ତାନ । ପଞ୍ଜାବର କର୍ମଠ ତଥା ସାହସୀ ପରମ୍ପରାର ମଧ୍ୟ ସେ ଥିଲେ ଅଧିକାରୀ । ତେଣୁ ଏକ ମହାନ ଆତ୍ମବଳି ବଳରେ ସେ ହୋଇଗଲେ ବିଦ୍ରୋହୀ ଆତ୍ମାର ପ୍ରତୀକ ଯାହା ସେହି ସମୟର ଯୁବ ପିଢ଼ିଗୁଡ଼ିକୁ ପ୍ରଭାବିତ କରିଥିଲା । ତାଙ୍କରି କାହାଣି ଏକ କିମ୍ବଦନ୍ତୀ ହୋଇ ସାରିଲାଣି ଓ ତାଙ୍କରି ନାମ ବୁଝାଏ ଦେଶପ୍ରେମ ତଥା ସ୍ୱାଧୀନତା ପାଇଁ ବଳିଦାନକୁ ... ଆମ ସ୍ୱାଧୀନତାକୁ ରକ୍ଷା କରିବା ଓ ବଳିଷ୍ଠ କରିବା ଧାରାରେ

ଆଜି ମଧ୍ୟ ଭଗତ ସିଂଙ୍କ ଭଳି ଉତ୍ସାହୀ ତଥା ସାହସୀ ମଣିଷର ଆବଶ୍ୟକତା ଆମ ପାଇଁ ରହିଛି ।''[୫୫]

ଯଦି ବିଦେଶୀ ବିତାଡ଼ନ ଭଗତ ସିଂଙ୍କ ଜୀବନର ଏକମାତ୍ର ଲକ୍ଷ୍ୟ ଥିଲା, ତେବେ ଏହି ପ୍ରଶଂସାମାନ ଯଥାର୍ଥ, ନଚେତ୍ ଅଧୁରା । ବହୁ ବିଜ୍ଞ ବ୍ୟକ୍ତି ତାଙ୍କୁ କେବଳ ଜଣେ ସ୍ୱାଧୀନତା ସଂଗ୍ରାମୀ ଭାବରେ ଚିତ୍ରଣ କରିଛନ୍ତି । ଏହି କଥା ସତ ଯେ ସେ ଜଣେ ସ୍ୱାଧୀନତା ସଂଗ୍ରାମୀ ଥିଲେ । ତେବେ ବି ତାହା ସମ୍ପୂର୍ଣ୍ଣ ସତ୍ୟ ନୁହେଁ । ଦେଶର ସ୍ୱାଧୀନତା ଥିଲା ତାଙ୍କ ଜୀବନର ଲକ୍ଷ୍ୟ ପଥରେ ଏକ ପାହାଚ ମାତ୍ର ।

ଏକ ଅତି କୌତୁହଳପୂର୍ଣ୍ଣ କଥା ପଟ୍ଟାଭି ସୀତାରାମାୟା ତାଙ୍କର *ଭାରତୀୟ ଜାତୀୟ କଂଗ୍ରେସର ଇତିହାସ* ବହିରେ ଉଲ୍ଲେଖ କରିଛନ୍ତି:

''ମନେ ଥିବ ଯେ କଲିକତାର ମୂଖ୍ୟ ସିଦ୍ଧାନ୍ତର ଶେଷ ଧାରା କଂଗ୍ରେସ ଆନ୍ଦୋଳନକୁ ଆର୍ଥିକ ସହାୟତା ନିମନ୍ତେ ଜନଗଣଙ୍କୁ ସେମାନଙ୍କର ଆୟର ଶତକଡ଼ା ଏକ ନିର୍ଦ୍ଦିଷ୍ଟ ଭାଗ ଜାତୀୟ ଆନ୍ଦୋଳନ ଉଦ୍ଦେଶ୍ୟରେ ପଇଠ କରିବା ପାଇଁ ଆହ୍ୱାନ କରିଥିଲା । ପ୍ରଥମେ ଶତକଡ଼ା ୫ ଭାଗ ପ୍ରସ୍ତାବ କରା ଗଲା, ପରେ ୨ ୧/୨ ଭାଗ । କିନ୍ତୁ କଂଗ୍ରେସର କେତେକ ଧନଶାଳୀ ସଭ୍ୟମାନଙ୍କର ସଭାରେ ପ୍ରକାଶିତ ଭୟାକୁଳଭାବ ଓ ଉଦ୍‌ବିଗ୍ନତାକୁ ଦେଖି ବିଷୟଟିକୁ ସେମାନଙ୍କର ନିଜନିଜର ଇଚ୍ଛା ଉପରେ ଛାଡ଼ି ଦେବାଟା ହିଁ ବିଜ୍ଞତାର କାର୍ଯ୍ୟ ହେବ ବୋଲି ବିଚାର କରାଗଲା । ଜୁଲାଇ ମାସର ବୁଲେଟିନ୍‌ରେ ଏହି ଭାବେ ସଂଗୃହିତ ହୋଇଥିବା କେତେକ ଚାନ୍ଦାର ଏକ ତାଲିକା ପ୍ରକାଶ ପାଇଥିଲା । ମୋଟ ଉପରେ କହିଲେ ଏହି ଆହ୍ୱାନର ଜବାବ ନଗନ୍ୟ ଥିଲା ।''[୫୬]

କଂଗ୍ରେସର ସଭ୍ୟମାନେ ଭାରତର ସ୍ୱାଧୀନତା ପାଇଁ ଲଢୁଥିଲେ, ଭଗତ ସିଂ ଓ ତାଙ୍କର ସାଥୀମାନେ ମଧ୍ୟ ଭାରତର ସ୍ୱାଧୀନତା ପାଇଁ ଲଢୁଥିଲେ । କଂଗ୍ରେସର ସଭ୍ୟମାନେ ନିଜନିଜର ଆୟର ଶତକଡ଼ା ଏକ ନିର୍ଦ୍ଦିଷ୍ଟ ଭାଗ ସ୍ୱାଧୀନତା ଉଦ୍ଦେଶ୍ୟରେ ଦାନ କରିବା ପାଇଁ କୁଣ୍ଠାବୋଧ କରିଥିବା ବେଳେ ଭଗତ ସିଂ ଓ ତାଙ୍କର ସାଥୀମାନେ ଭାରତର ସ୍ୱାଧୀନତା ଉଦ୍ଦେଶ୍ୟରେ ନିଜନିଜର ଜୀବନକୁ ଉତ୍ସର୍ଗ କରିଦେଲେ! ଏକେତ ସେମାନଙ୍କ ପାଇଁ ସ୍ୱାଧୀନତାର ଅର୍ଥ ଭିନ୍ନ ଥିଲା ନତୁବା ସେମାନେ ନିହାତି ନିର୍ବୋଧ ଥିଲେ । ବାସ୍ତବରେ ସେମାନଙ୍କ ପାଇଁ ସ୍ୱାଧୀନତାର ଅର୍ଥ ହିଁ ଭିନ୍ନ ଥିଲା । ସେମାନେ ନିର୍ବୋଧ ନଥିଲେ । କଂଗ୍ରେସର ସଭ୍ୟମାନେ ଭାରତରୁ ବ୍ରିଟିଶ୍ ବିତାଡ଼ନକୁ ସ୍ୱାଧୀନତା ବୋଲି ଭାବିଲା ବେଳେ ଭଗତ ସିଂ ଓ ତାଙ୍କର ସାଥୀମାନେ ଭାରତରୁ ବ୍ରିଟିଶ୍ ବିତାଡ଼ନ ସାଙ୍ଗକୁ ଭାରତର ଖଟିଖିଆ ମଣିଷକୁ ଶୋଷଣରୁ ମୁକ୍ତ କରିବା ସ୍ୱାଧୀନତାର ଅର୍ଥ ବୋଲି ବିଚାରୁ ଥିଲେ । କଂଗ୍ରେସର ସଭ୍ୟମାନଙ୍କ ପାଇଁ ସ୍ୱାଧୀନତାର ଅର୍ଥ ଇଂରେଜ କବଳରୁ ଦେଶର ମୁକ୍ତି ପାଖେ ଅଟକି ଯାଉଥିବା ବେଳେ ଭଗତ ସିଂ ଓ ତାଙ୍କର ସାଥୀମାନଙ୍କ ପାଇଁ ତାହାର ଅର୍ଥ ଦେଶକୁ ଅତିକ୍ରମ କରି ତା ଭିତରର ଲୋକଙ୍କ ମୁକ୍ତି ପର୍ଯ୍ୟନ୍ତ ଲମ୍ବି ଯାଉଥିଲା । ସେ କହିଛନ୍ତି,

> "ବାସ୍ତବରେ, ଆମ ଦେଶର ଆଧୁନିକ ଇତିହାସରେ ଆଜି ପର୍ଯ୍ୟନ୍ତ କୌଣସି ନା କୌଣସି ମୁଖ୍ୟ ଭୂମିକା ପାଳନ କରିଥିବା ସମସ୍ତ ରାଜନୈତିକ ଆନ୍ଦୋଳନରେ ଅଭାବ ଥିଲା ଆଦର୍ଶର, ଯାହାର ସଫଳ ରୂପାୟନ ସେଗୁଡ଼ିକର ଲକ୍ଷ୍ୟ ହେବା କଥା । ବୈପ୍ଳବିକ ଆନ୍ଦୋଳନ ମଧ୍ୟ ଏଥିରୁ ବାଦ ପଡ଼ି ନଥିଲା । ମୋର ସକଳ ଚେଷ୍ଟା ସତ୍ତ୍ୱେ ଗୋଟିଏ ମାତ୍ର ବ୍ୟତିକ୍ରମ ଛଡ଼ା ମୁଁ ଏପରି କୌଣସି ବିପ୍ଳବୀ ଦଳ ଦେଖିଲିନି ଯାହା ନିକଟରେ ସେ ଯେଉଁଥି ପାଇଁ ସଂଗ୍ରାମ କରୁଥିଲା ତାରି ସମ୍ପର୍କରେ ଏକ ସ୍ପଷ୍ଟ ଧାରଣା ଥିଲା । ବ୍ୟତିକ୍ରମଟି ହେଲା ଗଦର ପାର୍ଟି ଯାହା ଯୁକ୍ତରାଷ୍ଟ୍ର ଆମେରିକାର ଶାସନ ବ୍ୟବସ୍ଥା ଦ୍ୱାରା ପ୍ରଭାବିତ ହୋଇ ସ୍ପଷ୍ଟ ଭାବରେ କହୁଥିଲା ଯେ ସ୍ଥିତ ଶାସନ ବ୍ୟବସ୍ଥାକୁ ବଦଳେଇ ତା ସ୍ଥାନରେ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ପ୍ରତିଷ୍ଠା କରିବେ । ଅନ୍ୟାନ୍ୟ ଦଳର ଲୋକମାନଙ୍କ ପାଖରେ ଥିଲା କେବଳ ମାତ୍ର ଗୋଟିଏ ଧାରଣା — ବିଦେଶୀ ଶାସକଙ୍କ ବିରୁଦ୍ଧରେ ଲଢ଼େଇ । ନିହାତି ପ୍ରଶଂସନୀୟ ହୋଇଥିଲେ ସୁଦ୍ଧା ତାକୁ ଏକ ବୈପ୍ଳବିକ ଧାରଣା ବୋଲି କୁହାଯାଇ ପାରିବନି ।"[୫୭]

କଂଗ୍ରେସର ସଭ୍ୟମାନେ ସ୍ୱାଧୀନତାର ଅର୍ଥ ଯାହା ବୁଝୁଥିଲେ ତାହା ଭଗତ ସିଂ ଓ ତାଙ୍କର ସାଥୀମାନଙ୍କ ପାଇଁ ଏକ ବୈପ୍ଳବିକ ଧାରଣା ନଥିଲା । ନେହେରୁ ତ ଅତି ଚମକପ୍ରଦ କଥା ଲେଖିଛନ୍ତି,

> "ଏହା ସ୍ପଷ୍ଟ ଥିଲା ଯେ ଆମର ଅଧିକାଂଶ ନେତାଙ୍କ ପାଇଁ ସ୍ୱରାଜର ଅର୍ଥ ଯାହା ଥିଲା ତାହା ସ୍ୱାଧୀନତା ଠାରୁ ବହୁତ କିଛି କମ୍ ଥିଲା । ଗାନ୍ଧିଜୀ ଏହି ବିଷୟରେ କୌତୁକପ୍ରଦ ଭାବେ ଅସ୍ପଷ୍ଟ ଥିଲେ, ଏବଂ ଏହି ବିଷୟରେ ସ୍ପଷ୍ଟ ଚିନ୍ତା କରିବା ପାଇଁ ଉତ୍ସାହିତ ମଧ୍ୟ କରୁ ନଥିଲେ ।"[୫୮]

'ପୂର୍ଣ୍ଣ ସ୍ୱରାଜ'ର ଅର୍ଥ ଭଗତ ସିଂଙ୍କ ପାଇଁ କେବେ ହେଁ କେବଳ ବିଦେଶୀ ବିତାଡ଼ନ ନଥିଲା । 'ପୂର୍ଣ୍ଣ ସ୍ୱରାଜ'ର ଅର୍ଥ ତାଙ୍କ ପାଇଁ ଥିଲା ସମ୍ପୂର୍ଣ୍ଣ ବିପ୍ଳବ, ସମାଜର ଆମୂଳଚୂଳ ପରିବର୍ତ୍ତନ, ପୁଞ୍ଜିବାଦୀ ସମାଜର ଧ୍ୱଂସସ୍ତୁପ ଉପରେ ସମାଜବାଦୀ ସମାଜର ଗଠନ, ଶୋଷଣହୀନ ମୁକ୍ତ ସମାଜର ସ୍ଥାପନ । ତେଣୁ ଭଗତ ସିଂ କେବଳ ସ୍ୱାଧୀନତା ସଂଗ୍ରାମ ପାଇଁ ଆତ୍ମବଳି ଦେଇ ଶହୀଦ ହୋଇଥିଲେ ବୋଲି କହିଲେ ତାଙ୍କ ପ୍ରତି ଓ ତାଙ୍କ ଆଦର୍ଶ ପ୍ରତି ଅନ୍ୟାୟ କରାଯିବା ସଙ୍ଗେ ସଙ୍ଗେ ଭାରତର ଜନଗଣଙ୍କୁ ତାଙ୍କ ଆଦର୍ଶରୁ ବଞ୍ଚିତ କରା ଯାଉଛି, ସେମାନଙ୍କୁ ଅନ୍ଧକାର ଭିତରେ ରଖା ଯାଉଛି ।

ବ୍ରିଟିଶ୍ ଶାସନକୁ ଏକ ଅଭିଶାପ ବୋଲି ଗାନ୍ଧିଜୀ କାହିଁକି ବିଚାର କରୁଥିଲେ ସେ ମାର୍ଚ୍ଚ ୨, ୧୯୩୦ ରେ ଭାଇସ୍‌ରାୟଙ୍କୁ ଏକ ପତ୍ରରେ ଯାହା ଲେଖିଥିଲେ ସେଥିରୁ କିଛି ଅଂଶ ନିମ୍ନରେ ପ୍ରଦତ୍ତ ହେଲା :

> "ଏହାର କ୍ରମବର୍ଦ୍ଧମାନ ଶୋଷଣ ପଦ୍ଧତି ତଥା ସାମରିକ ଓ ବେସାମରିକ ଶାସନର ଧ୍ୱଂସମୁଖୀ ବ୍ୟୟ ଭାର, ଯାହା ବହନ କରିବା ପାଇଁ ଦେଶ କେବେ ହେଁ ସକ୍ଷମ ନୁହେଁ, କୋଟି କୋଟି ନିରୁପାୟ, ବୋବା ମଣିଷଙ୍କୁ ଦରିଦ୍ରତାକ୍ରାନ୍ତ କରିଛି ।"[୫୯]

''ରାଜନୈତିକ ଭାବେ ଏହା ଆମକୁ ଏକ ଦାସଦେଶରେ ପରିଣତ କରିଛି । ଆମ ସଂସ୍କୃତିର ଭିତ୍ତିକୁ ଦୁର୍ବଳ କରିଛି । ଏବଂ ନିରସ୍ତ୍ରୀକରଣ ନୀତି ଦ୍ୱାରା ଆମର ଆଧ୍ୟାତ୍ମିକ ଅଧଃପତନ ଘଟେଇଛି । ଆମର ଅନ୍ତଃଶକ୍ତିର ଅଭାବରୁ ମୋଟା ମୋଟି ସାର୍ବଜନୀନ ନିରସ୍ତ୍ରୀକରଣ ଦ୍ୱାରା ଏହା ଆମମାନଙ୍କୁ ଏପରି ଏକ ସ୍ଥିତିରେ ପହଞ୍ଚେଇଛି ଯାହା କାପୁରୁଷ ନିସହାୟତାର ପାଖାପାଖି ।''[୬୦]

''... ଯେଉଁ ସମାଧାନ ପାଇଁ ଉଚ୍ଚାରଣକ୍ଷମ ଭାରତ ସଚେତନ ଭାବେ ଓ ନିର୍ବାକ୍ କୋଟି କୋଟି ମଣିଷ ଅଚେତନ ଭାବେ ବ୍ୟାକୁଳ, ତାହା ଗୋଲ୍ ଟେବୁଲ୍ ସମ୍ମିଳନୀ ସମ୍ଭବତଃ ଯୋଗେଇ ପାରିବନି ।''[୬୧]

''ଯେଉଁମାନେ ଜାତି ନାମରେ ଜାତି ପାଇଁ କାମ କରୁଛନ୍ତି, ସେମାନେ ସ୍ୱାଧୀନତା ପାଇଁ ସେମାନଙ୍କର ବଳବତ୍ ଇଚ୍ଛାର ଅନ୍ତରାଳରେ ଯେଉଁ ଅଭିପ୍ରାୟ ରହିଛି ତାକୁ ବୁଝିବା ଓ ତା ସହ ସମ୍ପୃକ୍ତ ସମସ୍ତଙ୍କ ସମ୍ମୁଖରେ ଥୋଇବା ଆବଶ୍ୟକତା ରହିଛି, ନଚେତ ସ୍ୱାଧୀନତା ଏପରି ଏକ ପରିବର୍ତ୍ତିତ ରୂପରେ ଆମ ପାଖେ ପହଞ୍ଚିବାର ବିପଦ ରହିଛି ଯେ ଯେଉଁ ପରିଶ୍ରମୀ, ବାକ୍‌ହୀନ କୋଟି କୋଟି ଜନତାଙ୍କ ପାଇଁ ଆମେ ଏହା ଚାହୁଁଛେ ଏବଂ ଯାହାଙ୍କ ପାଇଁ ଏହା ନେବା ଯୋଗ୍ୟ, ସେମାନଙ୍କ ପାଇଁ ତାହା ମୂଲ୍ୟହୀନ ହୋଇଯିବ । ସେଇଥି ପାଇଁ ଏଇ କିଛି ଦିନ ହେଲା, ଲୋକଙ୍କୁ ମୁଁ କହି ଆସୁଛି ସ୍ୱାଧୀନତାର ବାସ୍ତବ ଅର୍ଥ କଅଣ ହେବା ଉଚିତ ।''[୬୨]

''ସଂସାର ଯାକର ଯେକୌଣସି ଦେଶଠୁଁ ବି ବଳି, ନିଃସନ୍ଦେହରେ, ଅତ୍ୟଧିକ ବ୍ୟୟବହୁଳ ଏକ ବିଦେଶୀ ଶାସନକୁ ଚଳେଇ ରଖିବା ପାଇଁ ... ଅସମାନତାକୁ ଚାଲୁ ରଖା ଯାଇଛି । ଆପଣଙ୍କର ନିଜ ଦରମା କଥା ଭାବନ୍ତୁ । ମାସିକ ୨୧,୦୦୦ ଟଙ୍କା । ସେଥିରେ ପୁଣି ପରୋକ୍ଷରେ କିଛି ଯୋଡ଼ା ଯାଇଥାଏ । ବ୍ରିଟିଶ୍ ପ୍ରଧାନ ମନ୍ତ୍ରୀ ପାଆନ୍ତି ବର୍ଷକୁ ୫,୦୦୦ ପାଉଣ୍ଡ, ଅର୍ଥାତ୍ ବର୍ତ୍ତମାନର ବିନିମୟ ଦରରେ ମାସିକ ୫,୪୦୦ ଟଙ୍କାରୁ କିଛି ଅଧିକ । ଆପଣ ଦୈନିକ ୭୦୦ ଟଙ୍କା ପାଇଲା ବେଳେ ଭାରତର ଦୈନିକ ହାରାହାରୀ ଆୟ ହେଉଛି ୨ ଅଣାରୁ କମ୍ । ପ୍ରଧାନ ମନ୍ତ୍ରୀ ଦୈନିକ ୧୮୦ ଟଙ୍କା ପାଇଲା ବେଳେ ଗ୍ରେଟ୍ ବ୍ରିଟେନ୍‌ର ହାରାହାରୀ ଦୈନିକ ଆୟ ହେଉଛି ୨ ଟଙ୍କା । ଏହି ଭାବେ ଆପଣ ପାଉଛନ୍ତି ଭାରତର ହାରାହାରୀ ଆୟର ପାଞ୍ଚ ହଜାରରୁ ଅଧିକ ଗୁଣ । ବ୍ରିଟିଶ୍ ପ୍ରଧାନ ମନ୍ତ୍ରୀ ବ୍ରିଟେନ୍‌ର ହାରାହାରୀ ଆୟର କେବଳ ନବେ ଗୁଣ ପାଆନ୍ତି । ଆଣ୍ଠେଇ ହୋଇ ମୁଁ ଅନୁରୋଧ କରେ ଯେ ଆପଣ ଏହା ଉପରେ ଟିକିଏ ଭାବନ୍ତୁ । ଏକ ଦୁଃଖଦ ସତ୍ୟକୁ ଠିକ୍ ଭାବେ ଉପସ୍ଥାପନ କରିବା ପାଇଁ ମୁଁ ଏକ ବ୍ୟକ୍ତିଗତ ଉଦାହରଣ ନେଇଛି । ଜଣେ ମଣିଷ ହିସାବରେ ଆପଣଙ୍କ ପାଇଁ ମୋର ସମ୍ମାନ ଏତେ ବେଶି ଯେ ଆପଣଙ୍କ ଭାବନାକୁ ଆଘାତ ଦେବା ଭଳି ଇଚ୍ଛା ମୁଁ କରି ପାରିବିନି । ମୁଁ ଜାଣେ ଆପଣ ଯାହା ଦରମା ପାଉଛନ୍ତି ତାହା ଆପଣଙ୍କର ଆବଶ୍ୟକତା ନୁହେଁ । ସମ୍ଭବତଃ ଆପଣଙ୍କର ପୂରା ଦରମାଟି ଦାନରେ ଯାଉଛି । କିନ୍ତୁ ଯେଉଁ ବ୍ୟବସ୍ଥା ଏଭଳି ଏକ ବନ୍ଦୋବସ୍ତକୁ ବଞ୍ଚାଇ ରଖିଛି, ବିଚାର ନଥାଇ

ତାକୁ ହିଁ ଆଗେ ଫୋପାଡ଼ି ଦେବା ଆବଶ୍ୟକ । ଭାଇସରାୟଙ୍କ ଦରମାକୁ ନେଇ ଯାହା ସତ ସମଗ୍ର ପ୍ରଶାସନ କ୍ଷେତ୍ରରେ ତାହା ସାଧାରଣ ଭାବେ ସତ ।''[୬୩]

''ବାରମ୍ବାର ସର୍ବସମ୍ମତ ବିରୋଧୀ ଭାରତୀୟ ମତାମତ ସତ୍ୱେ ବଡ଼ ବଡ଼ ବ୍ରିଟିଶ୍ ରାଜନୈତିକ ଦଳଗୁଡ଼ିକ ମଧ୍ୟରୁ ଗୋଟିଏ ବି ବ୍ରିଟେନ୍‌କୁ ଦିନ ପରେ ଦିନ ହୃଷ୍ଟପୁଷ୍ଟ କରୁଥିବା ଭାରତରୁ ଲୁଣ୍ଠିତ ଧନକୁ ପରିତ୍ୟାଗ କରିବା ପାଇଁ ପ୍ରସ୍ତୁତ ଥିବା ଭଳି ମୋତେ ଦେଖା ଯାଉନି ।''[୬୪]

''ତଥାପି, ଭାରତକୁ ଯଦି ଗୋଟିଏ ଜାତି ହିସାବରେ ବଞ୍ଚିବାକୁ ହେବ, ଯଦି କ୍ଷୁଧା ଯୋଗୁଁ ତାର ଜନଗଣଙ୍କର କ୍ରମଶଃ ମରଣକୁ ବନ୍ଦ କରିବାକୁ ହେବ, ତେବେ ଜରୁରି ଉପଶମ ପାଇଁ କିଛି ନା କିଛି ଉପାୟ ତ ଖୋଜି ବାହାର କରିବାକୁ ହେବ । ପ୍ରସ୍ତାବିତ ସମ୍ମିଳନୀ ନିଶ୍ଚିତ ରୂପେ ସେହି ଉପାୟ ନୁହେଁ । ଯୁକ୍ତି ଦ୍ୱାରା ବିଶ୍ୱାସ ଜନ୍ମେଇବା ବିଷୟ ଇଏ ନୁହେଁ । ଦୁଇ ସମକକ୍ଷ ଶକ୍ତି ମଧ୍ୟରୁ ଗୋଟିଏ ପାଖରେ ବିଷୟଟି ସ୍ଥିରିକୃତ ହୋଇଯାଏ । ବିଶ୍ୱାସ ହେଉ ବା ନହେଉ, ତାର ଅକ୍ତିଆରରେ ଥିବା ସମସ୍ତ ଶକ୍ତି ଖଟେଇ ଗ୍ରେଟ୍ ବ୍ରିଟେନ୍ ତାର ଭାରତୀୟ ବାଣିଜ୍ୟ ଓ ସ୍ୱାର୍ଥର ସୁରକ୍ଷା କରିବ । ତେଣୁ ସେହି ମୃତ୍ୟୁର ବେଷ୍ଟନୀରୁ ନିଜକୁ ମୁକ୍ତ କରିବା ପାଇଁ ଭାରତକୁ ଯଥେଷ୍ଟ ଶକ୍ତିର ବିକାଶ ଘଟେଇବାକୁ ହେବ ।''[୬୫]

''ଏହି ସାଧାରଣ ଉଦ୍ଦେଶ୍ୟ ଯୋଗୁଁ ହିଂସାର ଦଳ ଯେତେ ଅସଂଗଠିତ ଏବଂ, ବର୍ତ୍ତମାନ ପାଇଁ, ନଗଣ୍ୟ ହୋଇଥିଲେ ବି ଜନପ୍ରିୟ ହେଉଛି, ତାର ସ୍ଥିତି ଜାହିର କରୁଛି । ଏହାର ଲକ୍ଷ୍ୟ ମୋର ଲକ୍ଷ୍ୟ ସହ ସମାନ ।''[୬୬]

ବୋଧହୁଏ ଗାନ୍ଧିଜୀଙ୍କର ଏଭଳି ଲେଖାମାନ ପଢ଼ି ଭଗତ ସିଂ ଲେଖିଥିବେ:

''ଏକ ପକ୍ଷରେ ଗାନ୍ଧୀବାଦ ନିଜର ଭାଗ୍ୟବାଦୀ ତତ୍ତ୍ୱ ବାଢ଼ିବା ସଙ୍ଗେ ସଙ୍ଗେ ବୈପ୍ଳବିକ ତତ୍ତ୍ୱର କିଛିଟା ପାଖାପାଖି ପହଞ୍ଚିବା ପାଇଁ ଚେଷ୍ଟା କରୁଛି କାରଣ ଏହା ସଫଳତା ପାଇଁ ସାମୂହିକ କାର୍ଯ୍ୟକ୍ରମ ଉପରେ ନିର୍ଭର କରେ । ଯଦିଚ୍ ଏହି କାର୍ଯ୍ୟକ୍ରମର ସଫଳତା ସମୂହଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ ।''[୬୭]

ଏଠାରେ ଗାନ୍ଧିଜୀ ହିଂସା ପାର୍ଟିର ଲକ୍ଷ୍ୟ ଓ ତାଙ୍କର ନିଜର ଲକ୍ଷ୍ୟ ଏକା ବୋ୍‌ଲି କହୁଛନ୍ତି । ତେବେ ତାଙ୍କର ଲକ୍ଷ୍ୟକୁ ନେଇ ଯେତେବେଳେ ଜୱାହରଲାଲ ନେହେରୁ ଓ ସୁଭାଷ ଚନ୍ଦ୍ର ବୋଷଙ୍କ ଭଳି ଜାତୀୟ ନେତାମାନେ ବାଉଳି ହେଉଥିଲେ, ବୁଝିବାରେ ବିଫଳ ହେଉଥିଲେ, ସେତେବେଳେ ଗାନ୍ଧିଜୀଙ୍କର ଲକ୍ଷ୍ୟ ପ୍ରକୃତରେ କଣ ଥିଲା କହିବା ଆମ ପକ୍ଷେ ଅତି କଷ୍ଟକର କଥା । ତେଣୁ ''ଏହାର ଲକ୍ଷ୍ୟ ମୋର ଲକ୍ଷ୍ୟ ସହ ସମାନ ।'' — ଏହି କଥାକୁ ଆମେ ବୁଝିବାରେ କଷ୍ଟ ହେଉଛି, କାରଣ ତୁଳନାତ୍ମକ ବିଚାର ପାଇଁ ଗାନ୍ଧିଜୀଙ୍କ ଲକ୍ଷ୍ୟ ଆମ ସାମନାରେ ନାହିଁ । କିନ୍ତୁ ବ୍ରିଟିଶ୍ ଶାସନର ଯେଉଁ ଚରିତ୍ରଚିତ୍ରଣ ଗାନ୍ଧିଜୀ କରିଛନ୍ତି, ''ହିଂସା ପାର୍ଟି''ର ନେତାମାନେ ଭିନ୍ନ ଭାବେ ଚିତ୍ରଣ କରିଥାନ୍ତେ ବୋଲି ଆମେ ଭାବି ପାରୁନାହୁଁ, କାରଣ ଭଗତ ସିଂ ସଣ୍ଡେରସ୍‌ଙ୍କ ହତ୍ୟା

ପରେ ପରେ ଭାରତର ଅମଲାତନ୍ତ୍ରକୁ ସାବଧାନ କରି କହିଛନ୍ତି,

> "ଜଣେ ମଣିଷର ମୃତ୍ୟୁ ପାଇଁ ଆମେ ଦୁଃଖିତ । କିନ୍ତୁ ଏଇ ଲୋକଟିର ମୃତ୍ୟୁ ଜରିଆରେ ଏପରି ଏକ ଅନୁଷ୍ଠାନର ଜଣେ ପ୍ରତିନିଧି ମରିଛି, ଯାହା ଏତେ ନୃଶଂସ, ନୀଚ୍ ଓ ଏପରି ଜଘନ୍ୟ ଯେ ଏହାର ଉଚ୍ଛେଦ ନିହାତି ଆବଶ୍ୟକ ।"[୬୮]

କିନ୍ତୁ ଏହି କଥା ସ୍ପଷ୍ଟ ଯେ ଗାନ୍ଧିଜୀଙ୍କର ଲଢ଼େଇ ଇଂରେଜ ଜାତି ସହ ଆପୋଷ ନିଷ୍ପତ୍ତି ପାଇଁ ଥିଲା, ସେମାନଙ୍କର ସେବା ପାଇଁ ଥିଲା । ପଟ୍ଟାଭି ସୀତାରାମାୟା କହିଛନ୍ତି,

> "...ଯେପରି ଗାନ୍ଧି ବାରମ୍ବାର ବ୍ୟାଖ୍ୟା କରିଥିଲେ...ତାଙ୍କର ସମସ୍ତ ଅସହଯୋଗ ଥିଲା ସହଯୋଗ ପାଇଁ ଏବଂ ତାଙ୍କର ସମସ୍ତ ଲଢ଼େଇ ଥିଲା ଏକ ଆପୋଷ ନିଷ୍ପତ୍ତି ପାଇଁ ।"[୬୯]

ଗାନ୍ଧିଜୀ ନିଜେ କହିଛନ୍ତି,

> "ମୁଁ ଆପଣଙ୍କର ଲୋକଙ୍କର ଅନିଷ୍ଟ କରିବାକୁ ଚେଷ୍ଟା କରୁନି । ମୁଁ ସେମାନଙ୍କର ସେବା କରିବାକୁ ଚାହୁଁଛି, ଠିକ୍ ଯେପରି ମୁଁ ମୋ ଲୋକଙ୍କର ସେବା କରିବାକୁ ଚାହୁଁଛି । ମୁଁ ବିଶ୍ୱାସ କରୁଛି ଯେ ମୁଁ ସର୍ବଦା ସେମାନଙ୍କର ସେବା କରି ଆସିଛି । ୧୯୧୯ ପର୍ଯ୍ୟନ୍ତ ଅନ୍ଧଭାବେ ସେମାନଙ୍କର ସେବା କଲି । କିନ୍ତୁ ମୋର ଆଖି ଯେତେବେଳେ ଖୋଲିଲା ଓ ମୁଁ ଅସହଯୋଗର ଚିନ୍ତା କଲି, ତାଙ୍କର ହିଁ ସେବା କରିବା ଉଦ୍ଦେଶ୍ୟ ଥିଲା ।"[୭୦]

ବ୍ରିଟିଶ୍ ଜାତିର ସେବା କରିବା ଉଦ୍ଦେଶ୍ୟ ତ ବିପ୍ଳବୀମାନଙ୍କର ଆଦୌ ନଥିଲା, କିନ୍ତୁ ଐତିହାସିକ ଆବଶ୍ୟକତା ଦୃଷ୍ଟିରୁ ବେଳେବେଳେ ସେମାନଙ୍କ ସହ ଆପୋଷ ନିଷ୍ପତ୍ତି କରିବା ବିରୁଦ୍ଧରେ ସେମାନେ ନଥିଲେ । ଏହି ବିଷୟରେ ଭଗତ ସିଂ ଲେଖିଛନ୍ତି,

> "ବର୍ତ୍ତମାନର ଏହି ଆନ୍ଦୋଳନ କୌଣସି ନା କୌଣସି ଭାବରେ ଆପୋସ୍ ନିଷ୍ପତ୍ତିରେ ଶେଷ ହେବା ପାଇଁ ବାଧ୍ୟ । ଆପୋସ୍ ନିଷ୍ପତ୍ତି ଚଞ୍ଚଳ ହୋଇ ଯାଇପାରେ ନଚେତ୍ ଟିକିଏ ଡେରିରେ ବି ହୋଇପାରେ । ଆପୋସ୍ ନିଷ୍ପତ୍ତି ସମ୍ପର୍କରେ ଆମେ ଯେମିତି ସାଧାରଣତଃ ଭାବି ଥାଉ ତାହା ସେମିତି କିଛି ଲଜ୍ଜାଜନକ ଓ ଘୃଣ୍ୟ ବିଷୟ ନୁହେଁ । ବରଂ ରାଜନୈତିକ ରଣନୀତିରେ ଆପୋସ୍ ନିଷ୍ପତ୍ତି ଏକ ଅପରିହାର୍ଯ୍ୟ ଉପାଦାନ ରୂପେ ଆବଶ୍ୟକ ହୋଇଥାଏ — ଆପୋସ୍ ନିଷ୍ପତ୍ତି ନ କଲେ ନ ଚଳେ । ଅତ୍ୟାଚାରୀଙ୍କ ବିରୁଦ୍ଧରେ ଲଢ଼େଇ କରୁଥିବା ଯେକୌଣସି ଜାତି ପ୍ରଥମେ ପ୍ରଥମେ ତ ଲଢ଼େଇରେ ବିଫଳ ହେବା ପାଇଁ ବାଧ୍ୟ । କିନ୍ତୁ ତାର ଲଢ଼େଇର ମଧ୍ୟବର୍ତ୍ତୀ କାଳରେ ଆଂଶିକ ସଂସ୍କାରଗୁଡ଼ିକୁ ଆପୋସ୍ ନିଷ୍ପତ୍ତି ଜରିଆରେ ହିଁ ହାସଲ କରିଥାଏ ।
>
> "କେବଳ ଲଢ଼େଇର ଶେଷ ପର୍ଯ୍ୟାୟରେ ଯେତେବେଳେ ଜାତିର ସମସ୍ତ ଉପାୟ ଠୁଳ ହୋଇ ସାରିଥିବ, ସକଳ ଶକ୍ତି ସଂଗଠିତ ହୋଇ ସାରିଥିବ ସେତେବେଳେ ହୁଏତ ଏକ ଅନ୍ତିମ ଧକ୍କା ଦେଇହେବ, ହୁଏତ ଶାସକର ସରକାରକୁ

ଧ୍ୱଂସାତ କରିବାରେ ସଫଳତା ମିଳି ପାରିବ । ଏହି ସମସ୍ତ ପ୍ରସ୍ତୁତି ସତ୍ୱେ, ଏକ ଶକ୍ତିଶାଳୀ ଚକ୍ରାନ୍ତ ସତ୍ୱେ, ବିଫଳତାର ସମ୍ମୁଖୀନ ହେବାକୁ ପଡ଼ିପାରେ ଯେତେବେଳେ କୌଣସି ବି ଧରଣର ଆପୋସ୍ ନିଷ୍ପତ୍ତି ଅନିବାର୍ଯ୍ୟ ହୋଇ ପଡ଼େ, ଆପୋସ୍ ନିଷ୍ପତ୍ତି କରିବା ଛଡ଼ା ଅନ୍ୟ ଗତି ନଥାଏ ।''୨୧

''ମୁଁ ଯାହା ଦୃଷ୍ଟିକୁ ଆଣିବା ପାଇଁ ଚାହୁଁଥିଲି ତାହା ହେଲା ଏହା : ଆପୋସ୍ ନିଷ୍ପତ୍ତି ହେଉଛି ଏପରି ଏକ ଅତି ଦରକାରୀ ଅସ୍ତ୍ର ଯାହାକୁ ସଂଘର୍ଷର ବିକାଶ ପଥରେ ମଝିରେ ମଝିରେ ଆବଶ୍ୟକତା ଅନୁସାରେ ବ୍ୟବହାର କରିବାକୁ ପଡ଼ିଥାଏ — କିନ୍ତୁ ଆମ ଆନ୍ଦୋଳନର ଉଦ୍ଦେଶ୍ୟ ସର୍ବଦା ଆମ ଦୃଷ୍ଟି ସାମନାରେ ରହିବା ଉଚିତ । ଯେଉଁ ଲକ୍ଷ୍ୟ ହାସଲ କରିବା ପାଇଁ ଆମେ ସଂଗ୍ରାମ କରୁଛେ ସେହି ଲକ୍ଷ୍ୟ ସମ୍ପର୍କରେ ଆମର ସ୍ପଷ୍ଟ ଧାରଣା ରହିବା ନିହାତି ଆବଶ୍ୟକ । ଆମ ଆନ୍ଦୋଳନର ସଫଳତା କେତେ, ବିଫଳତା କେତେ, ତାହା ନିର୍ଦ୍ଧାରଣ କରିବା ପାଇଁ ସେହି ସ୍ପଷ୍ଟ ଧାରଣା ହିଁ ଆମକୁ ସାହାଯ୍ୟ କରିବ, ନିର୍ଦ୍ଧାରଣର ମାପକାଠି ହେବ ଓ ତାରି ଭିତ୍ତିରେ ଭବିଷ୍ୟତର କାର୍ଯ୍ୟକ୍ରମ ଆମେ ସହଜରେ ସ୍ଥିର କରି ପାରିବା । ତିଳକଙ୍କ ଆଦର୍ଶ ଠାରୁ ତାଙ୍କର ରଣନୀତିକୁ ଅଲଗା କରି କେବଳ ତାଙ୍କର ରଣନୀତିର ବିଚାର କଲେ ଆମେ ଦେଖିବା ଯେ ତାହା ହେଉଛି ଅନ୍ୟ ସଭିଙ୍କ ରଣନୀତିଠୁଁ ଭଲ ରଣନୀତି । ତୁମ ଶତ୍ରୁଙ୍କଠୁଁ ତୁମେ ଷୋହଳ ଅଣା ପାଇବା ପାଇଁ ଲଢ଼େଇ କରୁଛ, ଅଣାଟିଏ ପାଉଛ । ଠିକ୍ ଅଛି । ତାକୁ ମୁଣାରେ ପକାଅ ଏବଂ ବଳକା ପାଇଁ ଲଢ଼େଇ କର । ନରମପନ୍ଥୀଙ୍କ ଆଦର୍ଶ ଆଡ଼କୁ ଦୃଷ୍ଟି ପକାଅ । ଆମେ ନରମପନ୍ଥୀଙ୍କ ପାଖରେ ଯାହା ଦେଖୁ ତାହା ହେଉଛି ସେମାନଙ୍କର ଆଦର୍ଶ । ଅଣାଟିଏ ହାସଲ କରିବା ପାଇଁ ସେମାନେ ଲାଗି ପଡ଼ନ୍ତି ଓ ଶେଷରେ ତାହା ବି ସେମାନେ ପାଆନ୍ତିନି । ବିପ୍ଳବୀମାନେ ଏହା ସର୍ବଦା ମନେ ରଖିବା ଉଚିତ ଯେ ଅତି ନିଷ୍ଠାର ସହିତ ସେମାନେ ଏକ ସମ୍ପୂର୍ଣ୍ଣ ବିପ୍ଳବ ପାଇଁ ଚେଷ୍ଟା କରୁଛନ୍ତି । ଶତ୍ରୁଙ୍କ ହାତରେ ଥିବା କ୍ଷମତାକୁ ସମ୍ପୂର୍ଣ୍ଣ ଭାବେ ଦଖଲ କରିବା ଆମର ଲକ୍ଷ୍ୟ । ଆପୋସ୍ ନିଷ୍ପତ୍ତିକୁ ଭୟ କରାଯାଏ କାରଣ ଆପୋସ୍ ନିଷ୍ପତ୍ତି ପରେ ରକ୍ଷଣଶୀଳମାନେ ବିପ୍ଳବୀ ଶକ୍ତିକୁ ଭାଙ୍ଗି ଦେବାକୁ ଚେଷ୍ଟା କରନ୍ତି । କିନ୍ତୁ ସକ୍ଷମ ଓ ସାହସୀ ନେତାମାନେ ଏହି ଭଳିଆ ଅଘଟଣରୁ ଆନ୍ଦୋଳନକୁ ରକ୍ଷା କରି ପାରିବେ । ଏହି ଭଳି ସଙ୍କଟ କାଳରେ ଅସଲ ସମସ୍ୟାଗୁଡ଼ିକୁ ନେଇ, ବିଶେଷ କରି ଅସଲ ଲକ୍ଷ୍ୟକୁ ନେଇ ଯେପରି ଆମର ବିଚାର ବିଭ୍ରାନ୍ତି ନ ହୁଏ ସେଥି ପ୍ରତି ସତର୍କ ରହିବାକୁ ହେବ ।''୨୨

ଅହିଂସା ଅସ୍ତ୍ରରେ ସଜ୍ଜିତ ହୋଇ ଗାନ୍ଧିଜୀ ଦ୍ୱିମୁଖୀ ଲଢ଼େଇରେ ଲିପ୍ତ ଥିଲେ । ସେ କହିଛନ୍ତି,

''ଯଦିଚ୍ଚ ମୋର ଅଭିଜ୍ଞତା ନିଃସନ୍ଦେହରେ ସୀମିତ ଅଟେ, ତଥାପି ଏହା ଦର୍ଶାଏ ଯେ ଅହିଂସା ଏକ ପ୍ରବଳ ରୂପର ସକ୍ରୀୟ ଶକ୍ତି ହୋଇ ପାରେ । ବ୍ରିଟିଶ୍

ଶାସନର ସଂଗଠିତ ହିଂସାତ୍ମକ ଶକ୍ତି ଓ ହିଂସାର ଅଭିବୃଦ୍ଧିମୂଖୀ ଦଳର ଅସଂଗଠିତ ହିଂସାତ୍ମକ ଶକ୍ତି ଉଭୟ ବିରୁଦ୍ଧରେ ଏହାକୁ ଗତିଶୀଳ କରିବା ମୋର ଉଦ୍ଦେଶ୍ୟ । ସ୍ଥିର ହୋଇ ବସିଯିବା ଅର୍ଥ ଉଲ୍ଲିଖିତ ଉଭୟ ଶକ୍ତିକୁ ରାଜ କରିବା ପାଇଁ ଛାଡ଼ି ଦେବା । ଅହିଂସାର ଗୁଣକୁ ମୁଁ ଯେପରି ଭାବେ ଜାଣିଛି, ଓ ତା ପ୍ରତି ମୋର ଯେଉଁ ନିଃସନ୍ଦେହ ଓ ସ୍ଥିର ବିଶ୍ୱାସ ରହିଛି, ଆଉ କିଛି ବି ସମୟ ଅପେକ୍ଷା କରିବାଟା ମୋ ପକ୍ଷରେ ପାପ ହେବ ।[୭୩]

ଲବଣ ସତ୍ୟାଗ୍ରହ ବେଳେ ଗାନ୍ଧିଜୀଙ୍କୁ ଯଦି ଗିରଫ କରି ନିଆଯାଏ, ତେବେ ତା ପରେ କଂଗ୍ରେସ ନେତୃତ୍ୱ ଓ ଅନୁଗାମୀମାନେ କଣ କରିବେ ସେ ସମ୍ପର୍କରେ ଗାନ୍ଧିଜୀ 'ମୁଁ ଗିରଫ ହେବା ପରେ' ('When I Am Arrested') ଲେଖାରେ ନିର୍ଦ୍ଦେଶମାନ ଦେଇଥିଲେ । ସେହି ନିର୍ଦ୍ଦେଶମାନଙ୍କ ମଧ୍ୟରୁ ଗୋଟିଏ ହେଲା:

''ସଂସାର ସାରା ଯେଉଁଠି ବି ଗଣ ଆନ୍ଦୋଳନ ହୋଇଛି ସେଇଠି ତାହା ଅପ୍ରତ୍ୟାଶୀତ ନେତାମାନଙ୍କୁ ଜନ୍ମ ଦେଇଛି । ଏହି ଆନ୍ଦୋଳନଟି ସେହି ନିୟମର ବ୍ୟତିକ୍ରମ ହେବା ଉଚିତ ନୁହେଁ । ତେଣୁ ହିଂସାର ଶକ୍ତିଗୁଡ଼ିକୁ ପ୍ରତିରୋଧ କରିବା ପାଇଁ ଯଦିଚ୍ ସକଳ ଧରଣର କଳ୍ପନୀୟ ଓ ସମ୍ଭାବ୍ୟ ପ୍ରୟାସ କରାଯିବ, ଏଇଥର ଅସହଯୋଗ ଆନ୍ଦୋଳନ ଥରେ ଆରମ୍ଭ ହେଲେ ଯେତେବେଳ ପର୍ଯ୍ୟନ୍ତ ଜଣେ ବି ସତ୍ୟାଗ୍ରହୀ ମୁକ୍ତ ଅଛି ବା ବଞ୍ଚିଛି ତାହାକୁ ବନ୍ଦ କରାଯାଇ ପାରିବନି ଏବଂ ବନ୍ଦ କରାଯିବା ଉଚିତ ବି ନୁହେଁ ।''[୭୪]

ବ୍ରିଟିଶ୍ ଶାସନ ବିରୁଦ୍ଧରେ ଗାନ୍ଧିଜୀଙ୍କର ଏପରି ଯୁଦ୍ଧ ଘୋଷଣା ସତ୍ତ୍ୱେ 'ଶତ୍ରୁର ଶତ୍ରୁ ମିତ୍ର' ରୀତିରେ ବ୍ରିଟିଶ୍ ଶାସନର ଅନ୍ୟ ଶତ୍ରୁମାନେ ତାଙ୍କର ମିତ୍ର ହୋଇ ପାରିଲେନି ।

ଯୁଦ୍ଧର ଏହି ଡାକରା ସତ୍ତ୍ୱେ ଗାନ୍ଧିଜୀ ତ ବିଦେଶୀ ଇଂରେଜ ଶାସନ ସହ ଆପୋସ୍ ନିଷ୍ପତ୍ତି କରିବା ପାଇଁ ସର୍ବଦା ପ୍ରସ୍ତୁତ ଥିଲେ, କିନ୍ତୁ ଦେଶ ଭିତରର ହିଂସା ସହ ଅହିଂସାର ଆପୋସ୍ ନିଷ୍ପତ୍ତି କରିବା ଅସମ୍ଭବ ଥିଲା । କାରଣ ଇଂରେଜମାନେ ଦିନେ ନା ଦିନେ ଭାରତ ଛାଡ଼ି ଯିବାପାଇଁ ବାଧ ଥିଲେ । ସେମାନେ ଆଉ କିଛି ଦିନ ରହିଯାଇ ଥିଲେ ରାଜନୈତିକ କ୍ଷମତା ଭାରତୀୟମାନଙ୍କ ହାତକୁ ଚଞ୍ଚଳ ଆସନ୍ତାନି ସତ, ହେଲେ ଅର୍ଥନୈତିକ ଢାଞ୍ଚାରେ କୌଣସି ଫରକ ପଡ଼ନ୍ତାନି — ସେଇ ପୁଞ୍ଜିବାଦୀ ଅର୍ଥନୀତି ଚାଲୁ ରହନ୍ତା । କିନ୍ତୁ ଦେଶ ଭିତରର ''ହିଂସାର ଦଳ'' ତ ସବୁକାଳ ପାଇଁ ଦେଶ ଭିତରେ ରହନ୍ତେ । ଆଉ ସେମାନଙ୍କର ଅଭିବୃଦ୍ଧି ଘଟିବା ଓ ସେମାନଙ୍କ ହାତକୁ କ୍ଷମତା ଯିବା ମାନେ ଅର୍ଥନୈତିକ ଢାଞ୍ଚାରେ ଆମୂଳଚୂଳ ପରିବର୍ତ୍ତନ — ପୁଞ୍ଜିବାଦୀ ଢାଞ୍ଚା ବଦଳରେ ସମାଜବାଦୀ ଢାଞ୍ଚାର ସ୍ଥାପନ । ତେଣୁ ସେମାନଙ୍କ ବିରୁଦ୍ଧରେ ଗାନ୍ଧିଜୀଙ୍କର ଆପୋସ୍‌ହୀନ ଲଢ଼େଇ ।

# ଯୌଥ ନେତୃତ୍ୱରେ ବିଶ୍ୱାସ

ଗାନ୍ଧିଜୀ ବୋଧହୁଏ ଯୌଥ ନେତୃତ୍ୱରେ ବିଶ୍ୱାସ କରୁ ନଥିଲେ । ଭାରତର ସ୍ୱାଧୀନତା ଆନ୍ଦୋଳନ କାଳରେ ଜାତୀୟ ସ୍ତରରେ ଭାରତରେ ବହୁତ ବଡ଼ ବଡ଼ ନେତା ଥିଲେ । ତଥାପି ଗାନ୍ଧିଜୀ ଆଲୋଚ଼ନା ପାଇଁ ଇର୍‌ୱିନଙ୍କ ନିକଟକୁ ଏକାକୀ ଯାଉଥିଲେ । ଗୋଲ୍ ଟେବୁଲ୍ ବୈଠକ ପାଇଁ କଂଗ୍ରେସର ପ୍ରତିନିଧିତ୍ୱ ବିଷୟ ନେଇ ଆଲୋଚ଼ନା ହୋଇଥିଲା, କିନ୍ତୁ ଶେଷରେ ସେ ହିଁ ଏକାକୀ ଯୋଗ ଦେବା ବିଷୟ ନିଷ୍ପତ୍ତି ହେଲା । ପଟ୍ଟାଭି ସୀତାରାମାୟା ଲେଖିଛନ୍ତି,

> "କାର୍ଯ୍ୟକାରୀ କମିଟି ବୈଠକର ସମାପ୍ତି ପୂର୍ବରୁ ଯେଉଁ ଶେଷ ପ୍ରଶ୍ନଟିର ଆଲୋଚ଼ନା ହୋଇଥିଲା ତାହା ଥିଲା ଗୋଲ ଟେବୁଲ୍ ବୈଠକରେ କଂଗ୍ରେସର ପ୍ରତିନିଧିତ୍ୱକୁ ନେଇ । କାର୍ଯ୍ୟକାରୀ କମିଟିର ଅଧିକାଂଶ ସଭ୍ୟ ଏହି ମତାମତ ଦେଇଥିଲେ ଯେ ପ୍ରତିନିଧିଦଳରେ କେବଳ ଜଣେ ବ୍ୟକ୍ତି ରହିବା ଉଚ଼ିତ ନୁହେଁ, ଅନ୍ତତଃପକ୍ଷେ ୧୫ ଜଣ ସଭ୍ୟ ରହିବା ଉଚ଼ିତ । ୨୦ ପର୍ଯ୍ୟନ୍ତ ସଭ୍ୟଙ୍କ ଯୋଗ ଦେବାର ବ୍ୟବସ୍ଥା କରିବା ପାଇଁ ସରକାର ଇଚ୍ଛୁକ ଥିଲେ । ଜଣଙ୍କ ବଦଳରେ ୧୫ ବା ୨୦ ଜଣ ରହିଲେ ସେମାନଙ୍କ ପାଇଁ କୌଶଳଗତ ସୁବିଧା ହୋଇଥାନ୍ତା । ଯେଉଁ ଆଲୋଚ଼ନା ଚାଲିଲା, ତହିଁରେ ବିଷୟଟିକୁ ସ୍ପଷ୍ଟ କରି କହି ଦିଆଗଲା ଯେ ଏକ ସଂବିଧାନର ସବିସ୍ତାର ବିବରଣୀ ସ୍ଥିର କରିବା ପାଇଁ ଗାନ୍ଧି ଲଣ୍ଡନ ଯାଉ ନଥିଲେ, ସେ ଯାଉଥିଲେ ଏକ ଚୁକ୍ତିର ମୌଳିକ ବିଷୟଗୁଡ଼ିକ ସମ୍ପର୍କରେ ଆଲୋଚ଼ନା କରିବା ପାଇଁ । ଏହି ବିଷୟଟି ଯେତେବେଳେ ସ୍ପଷ୍ଟ ହେଇଗଲା, ଆଉ ତାକୁ ନେଇ ଦ୍ୱିମତ ରହିଲାନି ଓ ଗାନ୍ଧି ଏକାକୀ ଭାରତର ପ୍ରତିନିଧିତ୍ୱ କରିବା ଉଚ଼ିତ ବୋଲି ସର୍ବସମ୍ମତ ମତ ପ୍ରକାଶ ପାଇଲା । ଏହା କେବଳ ସର୍ବସମ୍ମତ ନଥିଲା, ଅକୁଣ୍ଠିତ ମଧ ଥିଲା । ଅନେକଙ୍କ ଅପେକ୍ଷା ଜଣେ ଆହୁରି ଭଲ ଭାବେ ଭାରତର ପ୍ରତିନିଧିତ୍ୱ କରି ପାରିବେ ।"[୨୫]

ଇଂରାଜିରେ ଗୋଟିଏ ପ୍ରବାଦ ଅଛି: "Too many cooks spoil the broth." — "ବହୁ ରାନ୍ଧୁଣିଆ ରନ୍ଧା ବିଗାଡ଼ନ୍ତି ।" ତା ପାଖକୁ ସେଇ ଭାଷାର ଆଉ ଗୋଟିଏ ପ୍ରବାଦ ମଧ ରହିଛି: "Many minds are better than one." — "ଗୋଟିଏ ଲୋକର ଚିନ୍ତା ଅପେକ୍ଷା ଅନେକଙ୍କର ସମ୍ମିଳିତ ଚିନ୍ତା ଭଲ ।" ଯଦି ଆପଣ କହିବେ ପ୍ରତିନିଧିମଣ୍ଡଳୀରେ ବହୁ ନେତା ଯାଇଥିଲେ ଆଲୋଚ଼ନାକୁ ବିଗାଡ଼ି ଦିଅନ୍ତେ ଓ ତାହା ଇଂରେଜ ଶାସକମାନଙ୍କର ସପକ୍ଷରେ ଯାଆନ୍ତା ଏବଂ ଯେଉଁ ସୁଯୋଗ ପାଇଁ ହିଁ ସେମାନେ ପ୍ରାୟ ୨୦ ଜଣ ପ୍ରତିନିଧିଙ୍କ ପାଇଁ ବ୍ୟବସ୍ଥା କରିବାକୁ ପ୍ରସ୍ତୁତ ଥିଲେ, ତେବେ ତାହା କଂଗ୍ରେସ ଦଳର ଶିଖରରେ ଥିବା ୧୫ ବା ୨୦ ଜଣ ନେତାଙ୍କର ରାଜନୈତିକ ଓ ଆଦର୍ଶଗତ 'ଐକ୍ୟ' ଭାବ ପ୍ରକାଶ କରେ! ଆପଣ ଯଦି କହିବେ ଦେଶର ଭବିଷ୍ୟତ

ନେଇ ଚିନ୍ତା କଲା ବେଳେ କେବଳ ଜଣେ ବ୍ୟକ୍ତିର ଚିନ୍ତା ଅପେକ୍ଷା ସାମୂହିକ ଚିନ୍ତା ବାଞ୍ଛନୀୟ, ତେବେ ଆପଣ ନିଶ୍ଚୟ କହିବେ ଯେ ସମୂହର ଉପସ୍ଥିତି ପରସ୍ପରର ଚିନ୍ତାକୁ ବଳିଷ୍ଠ କରନ୍ତା, ଅବଶ୍ୟ ସେମାନଙ୍କର ଲକ୍ଷ୍ୟ ଯଦି ଏକ ହୋଇଥାଏ । ଲକ୍ଷ୍ୟ ଯଦି ଏକ ନୁହେଁ ତେବେ କୌଣସି ଏକ ବ୍ୟକ୍ତିର ଚିନ୍ତାକୁ ଜାତିର ଚିନ୍ତା କହିବା ବାଞ୍ଛନୀୟ ନୁହେଁ । ଆଉ ରହିଲା ସର୍ବସମ୍ମତ ମତ ଓ ଅକୁଣ୍ଠ ସମର୍ଥନ କଥା । ରାଜନୈତିକ କ୍ଷେତ୍ରରେ 'ସର୍ବସମ୍ମତ ମତ', 'ଅକୁଣ୍ଠ ସମର୍ଥନ', 'ଦୀର୍ଘକାଳୀନ କରତାଳି'ର ଉଦାହରଣ ଇତିହାସରେ ବିରଳ ନୁହେଁ, ଯାହା ବେଳେ ବେଳେ ଦେଶକୁ ଅବାଟରେ ନେଇଛି । ସୋଭିଯେତ ୟୁନିଅନର ପତନ — ଏକ ଜ୍ୱଳନ୍ତ ଉଦାହରଣ । ଭଗତ ସିଂ ସାମୂହିକ ଚିନ୍ତାରେ ବିଶ୍ୱାସ ରଖୁଥିଲେ ଓ ସାମୂହିକ ଚିନ୍ତା ଦ୍ୱାରା ପରିଚାଳିତ ହେଉଥିଲେ, ଫାଶୀଖୁଣ୍ଟ ପର୍ଯ୍ୟନ୍ତ ଯାଇଥିଲେ ।

## ଜ୍ଞାନ ଆହରଣର ପଦ୍ଧତି

ଜଣେ ବ୍ୟକ୍ତିଙ୍କ ଉପରେ ଭରସା କରି ଯଦି ଦେଶର ଭବିଷ୍ୟତ ତାଙ୍କରି ହାତକୁ ଟେକି ଦିଆଯାଏ, ତେବେ ଆମର ଦେଖିବା କଥା: ସତ୍ୟରେ ଉପନୀତ ହେବା ପାଇଁ ତାଙ୍କର ପଦ୍ଧତି କଣ? ଭବିଷ୍ୟତକୁ ଦେଖିବା ପାଇଁ ତାଙ୍କର ମାର୍ଗ କଣ? ସେହି ପଦ୍ଧତି ଓ ମାର୍ଗ ସାର୍ବଜନୀନ ନା ସର୍ବସାଧାରଣଙ୍କ ପାଇଁ ତାହା ଲଭ୍ୟ ନୁହେଁ? ପଟ୍ଟାଭି ସୀତାରାମାୟା କହିଛନ୍ତି,

> "ଗାନ୍ଧିଙ୍କ ଯୋଜନାଗୁଡ଼ିକ ସର୍ବଦା ତାଙ୍କ ନିଜର ପ୍ରବୃତ୍ତି ଦ୍ୱାରା ହିଁ ପ୍ରକଟିତ ହୋଇଥାଏ, ତାହା ମସ୍ତିଷ୍କର ନିର୍ବିକାର, ହିସାବୀ ତର୍କବିତର୍କରୁ ଜାତ ନୁହେଁ । ତାଙ୍କର ଅନ୍ତସ୍ୱର ହିଁ ତାଙ୍କର ଉପଦେଷ୍ଟା ଓ ସତର୍କକାରୀ, ତାଙ୍କର ବନ୍ଧୁ, ଦାର୍ଶନିକ ଓ ମାର୍ଗଦର୍ଶକ ।"[୨୨]

> "ଅହମଦାବାଦରେ ଏକ ଅନୌପଚାରିକ କଥାବାର୍ତ୍ତା ବେଳେ ଗାନ୍ଧି କହିଥିଲେ, 'ମୁଁ ଆରମ୍ଭ କରିବା ପର୍ଯ୍ୟନ୍ତ ଅପେକ୍ଷା କର । ମୁଁ ପଦଯାତ୍ରାରେ ସେହି ଯାଗାରେ ପହଞ୍ଚିବା ମାତ୍ରକେ ସେହି ଚିନ୍ତାକୁ ପ୍ରକାଶ କରାଯିବ । କଣ କରିବାକୁ ହେବ ଆପଣମାନେ ଜାଣିବେ ।' ଅସହଯୋଗ (ପ୍ରତିରୋଧ) ଯୋଜନାର ବୌଦ୍ଧିକ ବିଶ୍ଳେଷଣ ବିରୁଦ୍ଧରେ, ବସ୍ତୁତଃ, ଏହା ଥିଲା ଏକ ସତର୍କ ବାଣୀ । ଏପରିକି ଅସହଯୋଗର ସବୁଠାରୁ ବଳି ନିଷ୍ଠାବାନ ଅନୁରାଗୀମାନେ ତାର ପୂର୍ଣ୍ଣ କଳେବରର ମାନସ ଛବି ସେତେବେଳେ ଆଙ୍କି ପାରୁ ନଥିଲେ । ଏହା ମଧ୍ୟ ଥିଲା ଭବିଷ୍ୟତରେ କଣ ସବୁ ଘଟି ଚାଲିବ ତାର ଅନୁପ୍ରାଣିତ ମାନସ ଛବି । ପରେ ପରେ କଣ ସବୁ ଘଟିବ ତାରି ସମ୍ପର୍କରେ ଗାନ୍ଧିଙ୍କର ସମ୍ଭବତଃ ସମ୍ପୂର୍ଣ୍ଣ ଧାରଣା ନଥିଲା । ସତେ ଯେପରି ଏକ ଝରକା ସାହାଯ୍ୟରେ ସେ ବସ୍ତୁସମୂହକୁ ଦେଖି ପାରୁଥିଲେ ଏବଂ

ପ୍ରେରଣା ଦ୍ୱାରା ତାଙ୍କର ଆଚରଣକୁ ପରିଚାଳିତ କରୁଥିଲେ । ଜଣେ ସଦାଚାରୀ ମଣିଷ ପାଇଁ ଏହି ଦୁଇଟି ହେଉଛି ପରମ ପଥପ୍ରଦର୍ଶକ, ପ୍ରମାଣ ନୁହେଁ କି ବୁଦ୍ଧି ନୁହେଁ ।''୨୨

ନିର୍ବିକାର, ହିସାବୀ ତର୍କବିତର୍କକୁ ଏକ ପଦ୍ଧତି ହିସାବରେ ଗ୍ରହଣ କରାଯାଇ ପାରେ, ଏହାକୁ ସାର୍ବଜନୀନ କରାଯାଇ ପାରେ । କରାଯାଇ ପାରେ କାହିଁକି, ଏହା ମୂଳରୁ ହିଁ ସାର୍ବଜନୀନ । କିନ୍ତୁ ପ୍ରବୃତ୍ତିକୁ ସାର୍ବଜନୀନ କରାଯାଇ ପାରିବ ନାହିଁ । କାରଣ ଆମେ ସମାଜର ଲୋକମାନଙ୍କୁ କହି ପାରିବାନି ଯେ ଆପଣମାନେ ସମସ୍ତେ ଆପଣମାନଙ୍କ ପ୍ରବୃତ୍ତି ଯାହା ପ୍ରକଟିତ କରୁଛି ତାରି ଦ୍ୱାରା ହିଁ ପରିଚାଳିତ ହୁଅନ୍ତୁ । ଆମେ ସମାଜର ସମସ୍ତଙ୍କୁ କହି ପାରିବାନି ଯେ ଆପଣମାନଙ୍କର ଅନ୍ତସ୍ୱର ହିଁ ଆପଣମାନଙ୍କର ଉପଦେଷ୍ଟା ଓ ସତର୍କକାରୀ, ଆପଣମାନଙ୍କର ବନ୍ଧୁ, ଦାର୍ଶନିକ ଓ ମାର୍ଗଦର୍ଶକ ହେଉ । ବୌଦ୍ଧିକ ବିଶ୍ଳେଷଣର ବିରୁଦ୍ଧରେ ଯିବା ପାଇଁ ଜନସାଧାରଣଙ୍କୁ ଆମେ କହି ପାରିବାନି । ଏକ ଝଲକ ସାହାଯ୍ୟରେ ବସ୍ତୁସମୂହକୁ ଦେଖିବା ପାଇଁ ଏବଂ ପ୍ରେରଣା ଦ୍ୱାରା ନିଜନିଜର ଆଚରଣକୁ ପରିଚାଳିତ କରିବା ପାଇଁ ଆମେ କହି ପାରିବା ନାହିଁ । ଆପଣମାନଙ୍କ ପାଇଁ ଏହି ଦୁଇଟି ହିଁ ହେଉଛି ପରମ ପଥପ୍ରଦର୍ଶକ, ପ୍ରମାଣ ନୁହେଁ କି ବୁଦ୍ଧି ନୁହେଁ ବୋଲି ଆମେ କହି ପାରିବାନି । କାରଣ ଏହି ଗୁଣମାନ ତଥାକଥିତ ମହାମାନବମାନଙ୍କ ନିକଟରେ ଦେଖା ଯାଇଥାଏ ଅବା ସେମାନଙ୍କ ଠାରେ ଆରୋପିତ ହୋଇଥାଏ। କିନ୍ତୁ ସେମାନେ ତ ବିରଳ, ଚଳିଯାଏ । ଏଗୁଡ଼ିକୁ ସାର୍ବଜନୀନ କଲେ ଲୋକେ ଯେଝା ବାଟରେ ଚଲିବେ — ବିଶୃଙ୍ଖଳା ହିଁ ହେବ ଏକମାତ୍ର ପରିଣତି ।

କିନ୍ତୁ ଭଗତ ସିଂ ଯେହେତୁ ସାମୂହିକ ଚିନ୍ତାରେ ବିଶ୍ୱାସ ରଖୁଥିଲେ ସେ ଜ୍ଞାନ ଆହରଣ ମାର୍ଗରେ ପ୍ରମାଣ, ତର୍କବିତର୍କ, ଆଲୋଚନା, ସମାଲୋଚନା, ଇତ୍ୟାଦିକୁ ଗ୍ରହଣ କରୁଥିଲେ । ସେ କହିଛନ୍ତି,

''ସମାଲୋଚନା ଓ ସ୍ୱାଧୀନ ଚିନ୍ତା, ଏହି ଦୁଇଟି ହେଉଛି ଜଣେ ବିପ୍ଳବୀର ଅପରିହାର୍ଯ୍ୟ ଗୁଣ ।''୨୮

''ପ୍ରଗତିର ଜଣେ ସପକ୍ଷବାଦୀଙ୍କ ପାଇଁ ଏହା ଅନିବାର୍ଯ୍ୟ ଯେ ସେ ପ୍ରାଚୀନ ବିଶ୍ୱାସର ପ୍ରତ୍ୟେକଟି ବିଷୟକୁ ଅବିଶ୍ୱାସ କରିବ, ତାର ସମାଲୋଚନା କରିବ, ପୁଣି ଯୁକ୍ତି ଦ୍ୱାରା ନିଜକୁ ପୁନଃପ୍ରତିଷ୍ଠା କରିବା ପାଇଁ ତାକୁ ଆହ୍ୱାନ କରିବ । ପ୍ରଚଳିତ ବିଶ୍ୱାସର ଅନ୍ଧିସନ୍ଧିରେ ଥିବା ପ୍ରତ୍ୟେକଟି ବିଷୟକୁ ନେଇ ସେ ବିଚାରବିମର୍ଶ କରିବ । ପର୍ଯ୍ୟାପ୍ତ ବିଚାର ଆଲୋଚନା ଯଦି କାହାକୁ କୌଣସି ସିଦ୍ଧାନ୍ତ ବା ଦର୍ଶନରେ ବିଶ୍ୱାସ କରିବା ପାଇଁ ବାଧ୍ୟ କରେ, ତେବେ ସେପରି ବିଶ୍ୱାସକୁ ସ୍ୱାଗତ । ତାହାର ଯୁକ୍ତି ଭ୍ରମାତ୍ମକ ହୋଇଥାଇ ପାରେ, ସେ ଭୁଲ କରିଥାଇ ପାରେ, ଅବାଟରେ ଯାଇଥାଇ ପାରେ, ତର୍କଦୋଷ ଥାଇପାରେ । ତଥାପି ସେ

ବର୍ତ୍ତମାନ ସଂଶୋଧନର ଅଧୀନ, କାରଣ ଚିନ୍ତନ ହେଉଛି ତାର ପଥ ପ୍ରଦର୍ଶକ । କିନ୍ତୁ ନିରୋଳା ବିଶ୍ୱାସ ଓ ଅନ୍ଧବିଶ୍ୱାସ ବିପଦଜନକ ଅଟେ, କାରଣ ଏହା ମସ୍ତିଷ୍କକୁ ମାନ୍ଦା କରେ ଓ ମଣିଷକୁ ପ୍ରତିକ୍ରିୟାଶୀଳ କରେ ।''[୭୯]

ଲାଲା ରାମ ଶରଣ ଦାସଙ୍କ *ଡ୍ରିମ୍‌ଲ୍ୟାଣ୍ଡ* ବହି ପାଇଁ ସେ ଯେଉଁ ଭୂମିକା ଲେଖିଥିଲେ ତହିଁରେ ସେ ଲେଖିଥିଲେ,

> ''ମୁଁ ବହିଟିକୁ ବିଶେଷ କରି ଯୁବକମାନଙ୍କ ପାଇଁ ସୁପାରିଶ କରୁଛି, କିନ୍ତୁ ଗୋଟିଏ ଚେତାବନୀ ସହିତ । କେବଳ ଅନ୍ଧଭାବେ ଅନୁସରଣ କରିବା ପାଇଁ, କେବଳ ଯାହା ଲେଖା ଅଛି ତାହା ସତ ବୋଲି ଧରିନେବା ପାଇଁ, ବହିଟିକୁ ଦୟାକରି ପଢ଼ନ୍ତୁନି । ପଢ଼ନ୍ତୁ ତାକୁ, ତାର ସମାଲୋଚନା କରିବା ପାଇଁ, ତାରି ଉପରେ ଚିନ୍ତା କରିବା ପାଇଁ, ତାରି ସାହାଯ୍ୟରେ ଆପଣମାନଙ୍କର ନିଜର ଧାରଣାଗୁଡ଼ିକୁ ଗଢ଼ି ତୋଳିବା ପାଇଁ ।''[୮୦]

ଜ୍ଞାନ ଆହରଣ ପାଇଁ ଭଗତ ସିଂଙ୍କ ଦ୍ୱାରା ପ୍ରଦର୍ଶିତ ମାର୍ଗକୁ ସାର୍ବଜନୀନ କରା ଯାଇପାରେ । ଜଣେ କେହି ଭୁଲ କଲେ ମଧ୍ୟ ସେ ସଂଶୋଧନର ବଳୟ ମଧ୍ୟରେ ରହିବ, ନିର୍ଭୁଲର ବଳୟ ମଧ୍ୟରେ ନୁହେଁ । ଅସଲ କଥା ହେଲା, ଯେଉଁମାନେ ସ୍ଥିତାବସ୍ଥା ଚାହୁଁଛନ୍ତି, ପରିବର୍ତ୍ତନ ଚାହୁଁ ନାହାନ୍ତି, ସେମାନଙ୍କୁ ପାଦକ ପରେ ଆଉ ପାଦେ ବାଟ ଦିଶିଲେ ଯଥେଷ୍ଟ, ଅଥଚ ଯେଉଁମାନେ ସ୍ଥିତାବସ୍ଥାକୁ ଭାଙ୍ଗି ଚୁରମାର କରି ଏକ ନୂଆ ସମାଜ ଗଠନ କରିବା ପାଇଁ ପରିବର୍ତ୍ତନ ଚାହୁଁଛନ୍ତି, ସେମାନଙ୍କୁ ତ ବହୁ ଦୂର ପର୍ଯ୍ୟନ୍ତ ଦେଖିବା ଆବଶ୍ୟକ ।

ଗାନ୍ଧି କହିଛନ୍ତି,

> ''କୋଟି କୋଟି ମୂକଙ୍କର ବାସ୍ତବ ଟ୍ରଷ୍ଟି ଆମ୍ଭମାନଙ୍କୁ ହେବାକୁ ହେବ ।''[୮୧]

କିନ୍ତୁ ଭଗତ ସିଂ କହିଛନ୍ତି,

> ''ଭବିଷ୍ୟତର ସମାଜ ଅର୍ଥାତ୍ କମ୍ୟୁନିଷ୍ଟ ସମାଜ ଯାହାକୁ ଆମେ ଗଢ଼ିବୁ, ତହିଁରେ ଆମେ ଦାତବ୍ୟ ଅନୁଷ୍ଠାନ ସ୍ଥାପନା କରିବୁନି । କିନ୍ତୁ ସେଥିରେ ଗରୀବ ନଥିବେ କି ଦରିଦ୍ର ନଥିବେ, ଭିକ୍ଷା ଦେବା ନଥିବ କି ଭିକ୍ଷା ନେବା ନଥିବ ।''[୮୨]

ଯେହେତୁ ଗରୀବ ନଥିବେ କି ଦରିଦ୍ର ନଥିବେ, ଭିକ୍ଷା ଦେବା ନଥିବ କି ଭିକ୍ଷା ନେବା ନଥିବ, ମୂକ ନଥିବେ, ତେଣୁ କିଏ କାହାର ଟ୍ରଷ୍ଟି ହେବା ପ୍ରଶ୍ନ ଉଠେନା । କାହାର ପୃଷ୍ଠପୋଷକ ହେବାର ପ୍ରଶ୍ନ ଉଠେନା, ପ୍ରଶ୍ନ ଉଠେ ସଶକ୍ତିକରଣର ।

ତଥାପି ଭାରତରେ ଗାନ୍ଧିଜୀଙ୍କର ମଧ୍ୟ ଅନ୍ତତଃ ପକ୍ଷେ ଗୋଟିଏ ସ୍ୱପ୍ନ ପୂର୍ଣ୍ଣ ହୋଇନି । ଉଦାହରଣ ସ୍ୱରୂପ, ସେ *ୟଙ୍ଗ ଇଣ୍ଡିଆ* ରେ ଲେଖିଥିଲେ,

"ଯେତେ ଦିନ ପର୍ଯ୍ୟନ୍ତ ପ୍ରତ୍ୟେକ ଲକ୍ଷପତି ଦୈନିକ ସାତ ପଇସିଆ ମଜୁରୀଆର ସ୍ତରକୁ ଖସି ନଆସିଛନ୍ତି, ସେତେ ଦିନ ପର୍ଯ୍ୟନ୍ତ ଡୋମିନିଅନ୍ ଷ୍ଟେଟସ୍ ଦେବା ପାଇଁ ଅପେକ୍ଷା କରିବାରେ ଭାଇସ୍‌ରାୟ କିଛି ମନେ କରିବେ ନି । କଂଗ୍ରେସ ହାତରେ ଯଦି ଆଜି ଶାସନ କ୍ଷମତା ଥାଆନ୍ତା, ପ୍ରତ୍ୟେକ ଭୋକିଲା ଚାଷୀକୁ ଏପରି ଏକ ସ୍ତରକୁ ନିଅନ୍ତା ଯେଉଁଠି ସେ ଏପରି ଏକ ରୋଜଗାର କରନ୍ତା ଯାହା ଏପରିକି ଲକ୍ଷପତିର ରୋଜଗାର ସହ ସମାନ ହୁଅନ୍ତା । ଏବଂ ଚାଷୀକୁ ଯେତେବେଳେ ତାର ଦୁର୍ଦ୍ଦଶା ସମ୍ପର୍କରେ ସଚେତନ କରାଯିବ ଓ ସେ ଯେତେବେଳେ ଜାଣିବ ଯେ 'ଭାଗ୍ୟ' ତାକୁ ଏହି ଅସହାୟ ଅବସ୍ଥାକୁ ଆଣି ନାହିଁ, ଆଣିଛି ପ୍ରଚଳିତ ଶାସନ ବ୍ୟବସ୍ଥା, ସେତେବେଳେ ତାର ଅଧୈର୍ଯ୍ୟତା ଯୋଗୁଁ ସେ, ସାହାଯ୍ୟ ରହିତ ଅବସ୍ଥାରେ, ସାମ୍ବିଧାନିକ ଓ ଅସାମ୍ବିଧାନିକ, ଏପରିକି ହିଂସା ଓ ଅହିଂସା ଉପାୟ ମଧ୍ୟରେ ଥିବା ଭେଦଭାବ ଭୁଲି ଯିବ । ସଠିକ ଦିଗରେ ଚାଷୀମାନଙ୍କୁ ପରିଚାଳିତ କରିବା ପାଇଁ କଂଗ୍ରେସ ଆଶା କରୁଛି ।"[୮୩]

ବ୍ରିଟିଶ ସରକାର ଭାରତର ଲକ୍ଷପତିମାନଙ୍କୁ ଦୈନିକ ସାତ ପଇସିଆ ମଜୁରୀଆର ସ୍ତରକୁ ଖସି ଆସିବା ପାଇଁ ନଦେଇ ଭାରତକୁ ସ୍ୱାଧୀନ କରିଦେଲେ । ପରାଧୀନ କାଳରେ ବ୍ରିଟିଶ ଶାସନ ଓ ବିଦେଶୀ ପୁଞ୍ଜିପତିଙ୍କ ଚାପରେ ଚାପି ହୋଇ ରହିଥିବା ଦେଶୀୟ ପୁଞ୍ଜିପତିମାନେ ସ୍ୱାଧୀନତା ପ୍ରାପ୍ତିର ଷାଠିଏ ବର୍ଷ ପୂର୍ତ୍ତି ବେଳକୁ ବହୁଦେଶୀୟ ପୁଞ୍ଜିପତିରେ ପରିଣତ ହେଲେଣି ଓ ପୃଥିବୀର ଅନ୍ୟାନ୍ୟ ଦେଶରେ ସେମାନଙ୍କର ପୁଞ୍ଜି ଖଟେଇବାରେ ଲାଗିଲେଣି । ଭାରତ ଝଟକୁଛି ବୋଇଲେ ସେମାନଙ୍କର ମୁହଁ ହିଁ ଆଜି ଝଟକୁଛି । କିନ୍ତୁ ଭୋକିଲା ଚାଷୀ ଆଜି ତାର ଆୟରୁ ଲକ୍ଷପତିର ସୁଖଭୋଗ କରିବା ତ ତେଣିକି ଥାଉ, ବର୍ତ୍ତମାନର ସାମାଜିକ ଓ ଅର୍ଥନୈତିକ ବ୍ୟବସ୍ଥା ତାକୁ ଆତ୍ମହତ୍ୟା କରିବା ପାଇଁ ବାଧ କରୁଛି । ଅବା ଭୋକିଲା ଆଦିବାସୀ ବାପୁଡ଼ା ଭୋକ ସମ୍ଭାଳି ନପାରି କୋଇଲି ଖାଉଛି, ମରଣ ହାବୁଡ଼ରେ ପଡ଼ୁଛି ।

ସାମ୍ରାଜ୍ୟବାଦୀ ଜଗତିକରଣର ଧକ୍କାରେ କେବଳ ଚାଷୀ ନୁହଁନ୍ତି ଭାରତର ସାଧାରଣ ମଣିଷଙ୍କ ଜୀବନ ଅସ୍ତବ୍ୟସ୍ତ ହୋଇ ପଡ଼ିଛି ଓ ସେମାନଙ୍କର ଭବିଷ୍ୟତ ଅନିଶ୍ଚିତ, ଅନ୍ଧକାରମୟ ହୋଇଛି । ଯେଉଁ ଯେଉଁ ମୂଲ୍ୟବୋଧ ପାଇଁ ଭାରତର ଜନଗଣ ସ୍ୱାଧିନତା ସଂଗ୍ରାମ କରିଥିଲେ, ଆଜି ସେହି ମୂଲ୍ୟବୋଧଗୁଡ଼ିକର କୌଣସି ମୂଲ୍ୟ ନାହିଁ । ସେଗୁଡ଼ିକର ମୂଳୋତ୍ପାଟନ କରି ଫୋପଡ଼ା ଯାଇଛି । ଆମେ ବିଦେଶୀ ଆଧିପତ୍ୟର ସମାପ୍ତି ଚାହିଁଥିଲେ, କିନ୍ତୁ ଆଜି ବିଦେଶୀମାନେ ଅନ୍ୟ ଭାବରେ ଭାରତରେ ଆଧିପତ୍ୟ ବିସ୍ତାର କରି ସାରିଛନ୍ତି । ବିଶ୍ୱ ବ୍ୟାଙ୍କ (W. B.), ଆନ୍ତର୍ଜାତିକ ମୁଦ୍ରା ପାଣ୍ଠି (I. M. F.), ଇଂଲଣ୍ଡର ଆନ୍ତର୍ଜାତିକ ବିକାଶ ବିଭାଗ (Department

for International Development — D. F. I. D.), ବିଶ୍ୱ ବାଣିଜ୍ୟ ସଙ୍ଗଠନ (W. T. O.) ଓ ବିଦେଶୀ ସରକାରମାନଙ୍କର ଅନ୍ୟାନ୍ୟ ସଂସ୍ଥାଗୁଡ଼ିକ ଏଠାରେ ଉପସ୍ଥିତ ରହି ଆମ ନୀତି ନିର୍ଦ୍ଧାରଣ ପାଇଁ ନିର୍ଦ୍ଦେଶ ଦେବା ସଙ୍ଗେ ସଙ୍ଗେ ଆମ ଶାସନକୁ ନିୟନ୍ତ୍ରଣ କରୁଛନ୍ତି । ଆମେ ନିଜକୁ ଏକ ସାର୍ବଭୌମ ଜାତି ବୋଲି ଦାବି କରୁଥିଲେ ମଧ୍ୟ ସାମ୍ରାଜ୍ୟବାଦୀଙ୍କ ଚାପରେ ସାମ୍ରାଜ୍ୟବାଦୀଙ୍କ ସ୍ୱାର୍ଥକୁ ସୁହାଇଲା ଭଳି ଆମର ଆଇନକାନୁନ ବଦଳୁଛି, ଉଦାହରଣସ୍ୱରୂପ — ଆମର ପେଟେଣ୍ଟ ଆଇନ । ପ୍ରସ୍ତୁତି-ଧାରା ଆଧାରିତ ପେଟେଣ୍ଟ ଆଇନକୁ ବଦଳେଇ ପ୍ରସ୍ତୁତ-ବସ୍ତୁ ଆଧାରିତ ପେଟେଣ୍ଟ ଆଇନ ହେଲା । ଗୋଟିଏ ଦେଶର ବିଦେଶୀଙ୍କୁ ତଡ଼ିଥିଲେ, କିନ୍ତୁ ବର୍ତ୍ତମାନ ବିଶ୍ୱର ସମସ୍ତ ଦେଶର ବିଦେଶୀଙ୍କୁ ନିମନ୍ତ୍ରଣ କରି ସକଳ ମର୍ଯ୍ୟାଦାସହ ଈଶାନକୋଣରେ ବସାଯାଉଛି । ସେହି କାର୍ଯ୍ୟରେ ସେମାନଙ୍କର ସଫଳତା ପାଇଁ କେନ୍ଦ୍ର ଓ ରାଜ୍ୟ ସରକାରମାନେ ଗର୍ବ କରୁଛନ୍ତି । ବିଦେଶୀ ପୁଞ୍ଜି ନିବେଶକାରୀମାନେ ଯଦି ଆଖପାଖରେ ନାହାନ୍ତି ତେବେ ସେମାନେ ଏହାକୁ ନିଜ ସରକାରର ଏକ ବିଫଳତା ବୋଲି ବିଚାର କରୁଛନ୍ତି । ଘରୋଇକରଣ ନାମରେ ନଦୀନାଳ ଖଣିଖାଦାନ ବଣପାହାଡ଼ ଓ ଅନ୍ୟାନ୍ୟ ସମସ୍ତ ସାଧାରଣ ସମ୍ପତ୍ତିକୁ ଶାଗମାଛ ଦରରେ ଦେଶବିଦେଶର ପୁଞ୍ଜିପତିଙ୍କ ହାତରେ ଟେକି ଦେବା ପାଇଁ ନିରବଛିନ୍ନ ଚେଷ୍ଟା ଚାଲିଛି । କେବଳ ସେତିକି ନୁହେଁ, ବ୍ୟକ୍ତିଗତ ମାଲିକାନାରେ ଥିବା ହଜାର ହଜାର ଏକର ଚାଷ ଜମି ମଧ୍ୟ ବହୁଜାତୀୟ ପୁଞ୍ଜିପତିମାନଙ୍କ ହାତକୁ ଟେକି ଦେବା ପାଇଁ ବ୍ୟଗ୍ର ଅଛନ୍ତି ଓ ସେପରି ପଦକ୍ଷେପର ବିରୋଧ ହେଲେ ନରସଂହାର କରିବାକୁ ମଧ୍ୟ ପଛାଉ ନାହାନ୍ତି ।

ଯେଉଁ ଭାରତ ନିଜକୁ ଏକ ଜନମଙ୍ଗଳ ରାଷ୍ଟ୍ର ବୋଲି କହୁଥିଲା ତାହାର ସ୍ୱର ମରି ମରି ଗଲାଣି । ଶିକ୍ଷା, ସ୍ୱାସ୍ଥ୍ୟ ଓ ଅନ୍ୟାନ୍ୟ କ୍ଷେତ୍ରର ଜନମଙ୍ଗଳ କାର୍ଯ୍ୟକ୍ରମସବୁ ବନ୍ଦ ହେବାରେ ଲାଗିଛି । କାଳକ୍ରମେ ସରକାରୀ ଶିକ୍ଷାନୁଷ୍ଠାନ ଓ ଚିକିତ୍ସାଳୟଗୁଡ଼ିକୁ ବ୍ୟକ୍ତିଗତ ମାଲିକାନା ହାତରେ ଟେକି ଦେଇ ଅବା ଆର୍ଥିକଦୃଷ୍ଟିରୁ ଆତ୍ମନିର୍ଭରଶୀଳ ଅନୁଷ୍ଠାନରେ ପରିଣତ କରି ଦେଇ ହୁଏତ ସରକାର ସେହି ଦାୟିତ୍ୱରୁ ହାତ ଧୋଇ ଦେବେ । ଯାହା କଲେ ବି ଲୋକଙ୍କ ଉପରେ ତାହାର ପ୍ରଭାବ ଏକା । କିନ୍ତୁ ତାହାର ତୁରନ୍ତ ପ୍ରଭାବ ପଡ଼ିବ ଭାରତର ଗରୀବ, ସାଧାରଣ ମଣିଷଙ୍କ ଉପରେ ଏବଂ ସେମାନେ ଅତି ଯନ୍ତ୍ରଣାରେ ବଞ୍ଚିବେ । ସେମାନେ ସେମାନଙ୍କର ସନ୍ତାନସନ୍ତତିଙ୍କୁ ଶିକ୍ଷାନୁଷ୍ଠାନକୁ ପଠାଇବା ପାଇଁ ସକ୍ଷମ ହେବେନି । ପରିବାରରେ କେହି ବେମାର ହେଲେ ଡାକ୍ତରୀ ଖର୍ଚ୍ଚ ବହନ କରି ପାରିବେନି । ଭାରତର ସ୍ୱାଧୀନତା ପରଠାରୁ ଗରୀବ ଘରର ପୁଅଝିଅମାନେ ସରକାରଙ୍କ ଜନମଙ୍ଗଳ କାର୍ଯ୍ୟକ୍ରମ ଦ୍ୱାରା ଉପକୃତ ହୋଇ ଆସୁଥିଲେ । ସେମାନଙ୍କ ମଧ୍ୟରୁ ଅନେକ ଆଜି ସମାଜ ଓ ଶାସନର ଉପର ପାହାଚଗୁଡ଼ିକରେ ବସିଛନ୍ତି । ଜନ-ବିରୋଧୀ ପଦକ୍ଷେପଗୁଡ଼ିକ କଣ ସେମାନେ ଜାଣନ୍ତି

ଏବଂ ସେମାନେ ନିଜେ ଯେଉଁ ପରିବାର ବା ସମାଜରୁ ଆସିଛନ୍ତି ତାରି ଉପରେ ଏହି ପଦକ୍ଷେପଗୁଡ଼ିକର ପ୍ରଭାବ କଣ ହେବ ତାହା ମଧ୍ୟ ଭଲକରି ଜାଣନ୍ତି । ସେହି ପଦକ୍ଷେପଗୁଡ଼ିକର ବିରୋଧ କରିବା ତ ଦେଣିକି ଥାଉ, ସେମାନେ ସ୍ତାବକ ସାଜିଛନ୍ତି । ସମ୍ଭବତଃ ସେମାନେ ସେମାନଙ୍କର ନିଜର ସାମାଜିକ ଚେର କଥା ଭୁଲି ଗଲେଣି । ସେମାନେ ଯେଉଁ ସମାଜରେ ଜାତ ହୋଇଥିଲେ ସେହି ସମାଜର ସ୍ୱାର୍ଥ ରକ୍ଷା ପାଇଁ ଯଦି ଆଗେଇ ଆସିବେନି, ତେବେ ଜନତା ନିଜ ସ୍ୱାର୍ଥକୁ ରକ୍ଷା କରିବା ପାଇଁ ନିଜେ ଲଢ଼େଇ କରିବା ପାଇଁ ଆଗେଇ ଆସିବେ ।

ଭାରତ ସାମ୍ରାଜ୍ୟବାଦୀଙ୍କ ଜନ୍ତା ମଧ୍ୟରେ ପଶି ସାରିଲାଣି । ଯେଉଁମାନେ ଭାରତ ଓ ତାର ସାଧାରଣ ମଣିଷମାନଙ୍କ ସ୍ୱାର୍ଥ ପାଇଁ ଅଙ୍ଗୀକାରବଦ୍ଧ, ସେମାନେ ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମ ପାଇଁ ଡାକରା ଦେଲେଣି । ଏହି ଡାକରା ପୁଣି ଗାନ୍ଧିଜୀଙ୍କ 'ପୂର୍ଣ୍ଣ ସ୍ୱରାଜ' ପାଇଁ ଡ଼ାକରା ନା ଭଗତ ସିଂଙ୍କ 'ପୂର୍ଣ୍ଣ ସ୍ୱରାଜ' ପାଇଁ ଡାକରା ତାହା ବିଚାର କରିବାର ବେଳ ପହଞ୍ଚି ଗଲାଣି । ଅର୍ଥାତ୍ ଏହି ଡାକରା ସ୍ଥିତାବସ୍ଥାରେ କେବଳ କିଛିଟା ସଂସ୍କାରମୂଳକ ଅଦଳ ବଦଳ ପାଇଁ ଡାକରା ନା ସମାଜର ଢାଞ୍ଚାରେ ଆମୂଳଚୂଳ ପରିବର୍ତ୍ତନ ପାଇଁ ଡାକରା ତାହା ବିଚାର କରିବାର ବେଳ ପହଞ୍ଚି ଯାଇଛି ।

ଭାରତର ସାଧାରଣ ମଣିଷ ତ ଗାନ୍ଧିଜୀଙ୍କ 'ପୂର୍ଣ୍ଣ ସ୍ୱରାଜ'ର ଫଳ ଦୀର୍ଘ ଷାଠିଏ ବର୍ଷ ଧରି ଅଙ୍ଗେ ନିଭେଇ ଆସିଛନ୍ତି । ଆଉ ବିଚାର ପାଇଁ ରହିଲା ଭଗତ ସିଂଙ୍କ 'ପୂର୍ଣ୍ଣ ସ୍ୱରାଜ', ଯାହାର କିଛି କିଛି ଦିଗ ଆମେ ଏହି ଲେଖାର ମଝିରେ ମଝିରେ ଆଲୋଚନା କରି ଆସିଛେ ଓ ଏହା ପରେ ବି କରିବା । କିନ୍ତୁ ଆମେ ବର୍ତ୍ତମାନ ଆମର ମୂଳ ପ୍ରଶ୍ନର ଆଲୋଚନା କରିବା ।

## ଶେଷ ଆଦର୍ଶ ଶେଷ ପରିଚୟ

ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ମଣିଷର ଜୀବନ ନିରବଛିନ୍ନ । ଏହି ନିରବଛିନ୍ନ ଜୀବନକୁ ମଣିଷ ଭାଗ ଭାଗ କରିଥାଏ ଶିଶୁ, କିଶୋର, ଯୁବକ, ପ୍ରୌଢ଼, ବୃଦ୍ଧ ଇତ୍ୟାଦିରେ, ବୟସର ବୈଶିଷ୍ଟ୍ୟକୁ ନେଇ । ଠିକ୍ ସେହିପରି ମଣିଷର ଚିନ୍ତା ମଧ୍ୟ ନିରବଛିନ୍ନ । ତାକୁ ମଧ୍ୟ ମଣିଷ ଭାଗ ଭାଗ କରିପାରେ, ବିଭିନ୍ନ ସମୟର ଚିନ୍ତାର ବୈଶିଷ୍ଟ୍ୟକୁ ନେଇ । ଭଗତ ସିଂଙ୍କ ଚିନ୍ତାକୁ ମଧ୍ୟ ଭାଗ ଭାଗ କରା ଯାଇପାରେ, ବିଭିନ୍ନ ସମୟରେ ତାଙ୍କ ଚିନ୍ତାର ବୈଶିଷ୍ଟ୍ୟକୁ ନେଇ । କିନ୍ତୁ ତାହା ହେବ କେବଳ ତାଙ୍କର ବୌଦ୍ଧିକ ବିକାଶର ଧାରା ଜାଣିବା ପାଇଁ, ବୌଦ୍ଧିକ ବିକାଶର ବିଭିନ୍ନ ସ୍ତର ଜାଣିବା ପାଇଁ ଏକ ଐତିହାସିକ ଅଧ୍ୟୟନ । ଗୋଟିଏ ଅବସ୍ଥାକୁ ଅତିକ୍ରମ କଲେ ହିଁ ମଣିଷ ଅନ୍ୟ ଅବସ୍ଥାରେ ପହଞ୍ଚି ଥାଏ ଏବଂ ପହଞ୍ଚି ସାରିବା ପରେ ପୂର୍ବର ଅବସ୍ଥା ତାଙ୍କରି ପାଖରେ ନଥାଏ, ଯଦିଚ ଦୁଇ ଅବସ୍ଥା ମଧ୍ୟରେ କୌଣସି ଲକ୍ଷ୍ମଣ ରେଖା ନଥାଏ । ଏମିତି ତ

ଆମେ କଥାରେ କହିଲା ବେଳେ କହୁଛେ: ବୁଢ଼ା ଯିଏ ଶିଶୁ ସିଏ । କିନ୍ତୁ ବାସ୍ତବରେ ବୁଢ଼ାଟିଏ ଶିଶୁ ନୁହେଁ । ଠିକ୍ ସେପରି ବୌଦ୍ଧିକ ବିକାଶର ଧାରାରେ ସ୍ଥିତ ଧ୍ୟାନଧାରଣାର ବିରୋଧ ପ୍ରକ୍ରିୟା ଭିତରେ ବୌଦ୍ଧିକ ବିକାଶ ହୋଇଥାଏ, ଧ୍ୟାନଧାରଣା ଅନ୍ୟ ସ୍ତରରେ ପହଞ୍ଚି ଥାଏ । ଯେତେବେଳେ ମଣିଷ ବୌଦ୍ଧିକ ବିକାଶର ଯେଉଁ ସ୍ତରରେ ପହଞ୍ଚିଛି, ସେହି ସ୍ତର ହିଁ ତାହାର ପରିଚୟ । ଜଣେ ସୁସ୍ଥ ମଣିଷର ଶେଷ ସ୍ତର ହେଉଛି ତାର ଶେଷ ପରିଚୟ । ଜଣେ ବ୍ୟକ୍ତିର କୌଣସି ପୂର୍ବ ସ୍ତରକୁ ନେଇ ତାଙ୍କର ପରିଚୟ କରେଇବା ମାନେ ତାଙ୍କ ପ୍ରତି ଅନ୍ୟାୟ କରାଯିବା ସଙ୍ଗେ ସଙ୍ଗେ ଅନ୍ୟମାନଙ୍କ ନିକଟରେ ତାଙ୍କର ସଠିକ ପରିଚୟ ପ୍ରଦାନ କରା ଯାଉନି ।

ଭଗତ ସିଂଙ୍କ କ୍ଷେତ୍ରରେ ଠିକ୍ ସେହି କଥା ଘଟିଛି । ଫାଶୀ ପାଇବା ବେଳର ଶେଷ ଭଗତ ସିଂ ତ ଅତି ବିଖ୍ୟାତ ହୋଇ ସାରିଥିଲେ । ଖ୍ୟାତି ଓ ଲୋକପ୍ରିୟତାରେ ଏପରିକି ଗାନ୍ଧିଜୀଙ୍କ ସମକକ୍ଷ ଥିଲେ । ସମସ୍ତେ ତାଙ୍କୁ ଆପଣାର କରିବା ପାଇଁ ଚାହିଁଲେ, ଅଥଚ ତାଙ୍କର ଶେଷ ଚିନ୍ତା ସମସ୍ତଙ୍କ ପାଇଁ ଗ୍ରହଣ ଯୋଗ୍ୟ ନଥିଲା । ତେଣୁ ପୂର୍ବ ସ୍ତରଗୁଡ଼ିକରୁ ଯାହାକୁ ଯାହା ସୁହାଇଲା ତାକୁ ଜାବୁଡ଼ି ଧରି ଭଗତ ସିଂଙ୍କୁ ଆପଣାର କଲା ଓ ଲୋକଙ୍କୁ ସେହି କଥା କହିଲା । ବିଭିନ୍ନ ସ୍ୱାର୍ଥ ଦୃଷ୍ଟିରୁ ଭଗତ ସିଂଙ୍କର ମୂଲ୍ୟାୟନ ମଧ୍ୟ ଭିନ୍ନ ଭିନ୍ନ ଭାବରେ ହେଲା । କିନ୍ତୁ ତାଙ୍କ ଶେଷ ଚିନ୍ତାର ବିଶେଷ ଆଲୋଚନା ହେଲାନି । ଲୋକଲୋଚନର ଆଢୁଆଳରେ ରହିଲା ।

ଧାର୍ମିକ ମୌଳବାଦୀମାନେ ତାଙ୍କୁ ଧାର୍ମିକ ବୋଲି କହିଲେ ଅଥଚ ତାଙ୍କର ଶେଷ ଜୀବନର ଲେଖା *ମୁଁ ନାସ୍ତିକ କାହିଁକି ?* କୁ ନଜରକୁ ନେଲେନି, ଲୋକଲୋଚନରୁ ଆଡ଼େଇ ରଖିଲେ ।

ସ୍ୱାଧୀନତା ସଂଗ୍ରାମୀ ବାବା ରଣଧୀର ସିଂ ଗଦର ପାର୍ଟି ସହ ସମ୍ପର୍କ ରଖିଥିବା ଅପରାଧରେ ୧୯୩୦-୩୧ ବେଳକୁ ଲାହୋର ଜେଲ୍‌ରେ ଦଣ୍ଡ ଭୋଗୁଥିଲେ । ସେ ଜଣେ ଧର୍ମପ୍ରାଣ ବ୍ୟକ୍ତି ଥିଲେ । ଭଗତ ସିଂ ଈଶ୍ୱର ବିଶ୍ୱାସ କରୁ ନଥିବା ଶୁଣି ତାଙ୍କୁ ଅତ୍ୟନ୍ତ ଦୁଃଖ ଲାଗିଥିଲା । ତେଣୁ ଅନ୍ୟ ବନ୍ଧୁଙ୍କ ସହଯୋଗରେ ସେ ଭଗତ ସିଂଙ୍କୁ ତାଙ୍କ ସେଲ୍‌ରେ ଭେଟି ଈଶ୍ୱରଙ୍କ ଅସ୍ତିତ୍ୱ ସମ୍ପର୍କରେ ତାଙ୍କୁ ବୁଝାଇବାକୁ ଚେଷ୍ଟା କଲେ । ବିଫଳ ମଧ୍ୟ ହେଲେ । ଶେଷରେ ସେ ରାଗିଯାଇ ତାଙ୍କର କଟୁ ମନ୍ତବ୍ୟରେ କହିଥିଲେ, ''ଖ୍ୟାତି ତୁମର ମତି ଭ୍ରମ କରିଛି, ବୃଦ୍ଧି ପାଇଛି ତୁମର ଅହଂକାର, ଯାହା ଈଶ୍ୱର ଓ ତୁମ ମଧ୍ୟରେ ଏକ କଳା ପରଦା ହୋଇ ଠିଆ ହୋଇଛି।'' ଏହି ମନ୍ତବ୍ୟର ଉତ୍ତରରେ ଶହୀଦ ଭଗତ ସିଂ ***ମୁଁ ନାସ୍ତିକ କାହିଁକି?*** (*Why I Am An Atheist ?*) ଲେଖିଥିଲେ ।

ଅଥଚ କିର୍‌ପାଲ ସିଂ ନାରଙ୍ଗ ଲେଖିଛନ୍ତି,

''ଯଦିଚ ଭଗତ ସିଂ ଏକ ସମୟରେ ତାଙ୍କର କେଶ କାଟିବା ପାଇଁ ବାଧ ହୋଇ ଥିଲେ, ସନ୍ଥ ରଣଧୀର ସିଂଙ୍କ *ଏପିଷ୍ଟିଲ୍‌ସ ଫ୍ରମ୍ ଦ ପ୍ରିଜନ* ରେ ଦିଆ

ଯାଇଥିବା ତଥ୍ୟରୁ ସ୍ପଷ୍ଟ ଜଣା ପଡ଼େ ଯେ ଶେଷ ପର୍ଯ୍ୟନ୍ତ ଶିଖଧର୍ମ ପ୍ରତି ତାଙ୍କର ବିଶ୍ୱାସ ଦୃଢ଼ ଥିଲା ଅବା ଦୋଦୁଲ୍ୟମାନ ହୋଇ ନଥିଲା । ବାସ୍ତବରେ, ଫାଶୀଖୁଣ୍ଟରେ ଚଢ଼ିବାର କିଛି ମାସ ପୂର୍ବରୁ, ଶିଖ ରୀତିନୀତି ସହ ସହମତ ହୋଇ ପୁଣି କେଶ ରଖିବା ଆରମ୍ଭ କରିଥିଲେ । ଅବଶ୍ୟ ଏହାର ଅର୍ଥ ଏୟା ନୁହେଁ ଯେ ଅନ୍ୟାନ୍ୟ ଧର୍ମ ପ୍ରତି ତାଙ୍କର କିଛି ଅଭିଯୋଗ ଥିଲା; ଅପର ପକ୍ଷେ, ତାଙ୍କର ଧାର୍ମିକ ଐତିହ୍ୟ ଓ ଅନୁଭବଶକ୍ତି ଉପରେ ଏହାର ସର୍ବବ୍ୟାପୀ ପ୍ରଭାବ ସମ୍ପର୍କିତ ଧାରଣାକୁ ନେଇ ତାଙ୍କର ଯେଉଁ ଗର୍ବ ତାକୁ ଦୃଢ଼ କରେ । ଜଣେ ବଡ଼ ଜାତୀୟବାଦୀ ହେବା ପାଇଁ ନିଜର ପୈତୃକ ଧର୍ମକୁ ଅସ୍ୱୀକାର କରିବା ଆବଶ୍ୟକ ନାହିଁ । ଧର୍ମର ରୀତିନୀତି, ଉତ୍ସବ, ପର୍ବପର୍ବାଣି, ତତ୍ତ୍ୱ, ବିଧେୟ-ଅବିଧେୟ ମାନିବା ଦ୍ୱାରା ଦେଶଭକ୍ତି ଓ ଜାତୀୟ ଏକରୂପତା ପ୍ରତି ଥିବା ବିଶ୍ୱାସ ନିଶ୍ଚିତ ହୋଇଥାଏ ।''[୮୪]

କିନ୍ତୁ ଭଗତ ସିଂ ନିଜେ କହିଥିଲେ,

''ଜଣେ ବନ୍ଧୁ ମୋତେ ପ୍ରାର୍ଥନା କରିବା ପାଇଁ ଅନୁରୋଧ କଲେ । ଯେତେବେଳେ ମୁଁ ମୋ ନାସ୍ତିକବାଦ କଥା ତାଙ୍କୁ କହିଲି, ସେ କହିଲେ, 'ତୁମ ଅନ୍ତକାଳରେ ତୁମେ ବିଶ୍ୱାସ କରିବା ଆରମ୍ଭ କରିବ ।' ମୁଁ କହିଲି, 'ନା, ପ୍ରିୟ ମହାଶୟ, ତାହା ହେବନି । ତାହା ମୋ ପକ୍ଷରେ ହେବ ଏକ ହୀନକାର୍ଯ୍ୟ ଓ ତାକୁ ମୁଁ ମୋର ନୈତିକ ଅଧପତନ ବୋଲି ଭାବିବି । ସ୍ୱାର୍ଥପର ଉଦ୍ଦେଶ୍ୟ ଥାଇ ମୁଁ ପ୍ରାର୍ଥନା କରିବାକୁ ଯାଉନି ।'''[୮୫]

ଜୀବନର ଶେଷ ମୁହୂର୍ତ୍ତରେ ଭଗତ ସିଂ ଓ ଜେଲ୍ ଓ୍ୱାର୍ଡେନ୍ ଛତର ସିଂଙ୍କ ମଧ୍ୟରେ ହୋଇଥିବା କଥାବାର୍ତ୍ତା ଶୁଣନ୍ତୁ,

''ଅପରାହ୍ନ ତିନିଟା ବେଳେ ସୈନ୍ୟ ବିଭାଗର ହାବିଲଦାର, ସରଦାର ଛତର ସିଂ, ଯିଏ ଲାହୋର ସେଣ୍ଟ୍ରାଲ ଜେଲ୍‌ର ମୁଖ୍ୟ ଓ୍ୱାର୍ଡେନ୍ ଥିଲେ, ଖବର ପାଇଲେ ଯେ ତିନି ଅଭିଯୁକ୍ତଙ୍କୁ ସେହି ଦିନ ସନ୍ଧ୍ୟାରେ ଫାଶୀ ଦିଆଯିବ । ତା ସମ୍ପର୍କୀତ ବ୍ୟବସ୍ଥାମାନ ପ୍ରସ୍ତୁତ ହୋଇ ରହିବା ଆବଶ୍ୟକ ।

''ଛତର ସିଂ ମଧୁର ମିଜାଜ୍‌ର ଧାର୍ମିକ ଲୋକ ଥିଲେ, ଗୁରୁବାଣୀ ପ୍ରତିଦିନ ପାଠ କରୁଥିଲେ ।

''ସେ ଯେତେବେଳେ ଜାଣିଲେ ଯେ ଭଗତ ସିଂଙ୍କର ଶେଷ ସମୟ ଆସି ପହଞ୍ଚିଲାଣି, ସେ ତାଙ୍କ ନିକଟକୁ ଆସି କହିଲେ, 'ମୁଁ ତୁମର ପିତୃତୁଲ୍ୟ । ତୁମେ ଜାଣ ତୁମର ଶେଷ ସମୟ ଆସି ପହଞ୍ଚିଲାଣି । ମୁଁ ଯାହା କହିବି ତୁମେ ତାହା ଶୁଣିବ ?'

'''ଦୟାକରି କହନ୍ତୁ', ଭଗତ ସିଂ କହିଲେ ।

''ଛତର ସିଂ କାନ୍ଦ କାନ୍ଦ ହେଲେଣି । ସେ କହିଲେ, 'ଏଇଟା ହିଁ ମୋର ଅନୁରୋଧ । ଦୟାକରି ଗୁରୁବାଣୀ ଥରୁଟିଏ ପଢ଼ିଦିଅ । ମୁଁ ଏହି ଗୁଟ୍‌କା ଟି ତୁମ ପାଇଁ ଆଣିଛି । ନିଅ ।'

''ଭଗତ ସିଂ ଆତ୍ମହରା ହୋଇ ବହେ ହସିଲେ ଓ କହିଲେ, 'ଆଉ କିଛି ଦିନ ଆଗରୁ ଯଦି ତୁମେ ଗୁରୁବାଣୀ ପାଠ କରିବାକୁ କହିଥାନ୍ତ, ତେବେ ମୁଁ ଆନନ୍ଦରେ କରିଥାନ୍ତି । ବର୍ତ୍ତମାନ ତ ମୋର ଶେଷ ସମୟ ଆସି ପହଞ୍ଚି ଯାଇଛି । ମୁଁ ଯଦି ଭଗବାନଙ୍କୁ ଏଇ ମୁହୂର୍ତ୍ତରେ ମନେ ପକାଏ, ସେ ମୋତେ ଜଣେ କାପୁରୁଷ ବୋଲି କହିବେ କାରଣ ମୁଁ ମରିବା ବେଳକୁ ତାଙ୍କ ନାମ ଉଚ୍ଚାରଣ କଲି । ତେଣୁ ଅତୀତରେ ମୋ ସମୟ ମୁଁ ଯେମିତି ବିତଉ ଥିଲି ମୋର ଶେଷ ସମୟ ଟିକକ ମଧ୍ୟ ଠିକ୍ ସେମିତି ବିତେଇବା ବ୍ୟାବହାରିକ ଦୃଷ୍ଟିରୁ ଆହୁରି ଭଲ ହେବ। ମୁଁ ଜଣେ ନାସ୍ତିକ ଥିଲି ବୋଲି ଲୋକେ କହନ୍ତୁ, କିନ୍ତୁ ଜୀବନର ଶେଷ ବେଳରେ ଭଗତ ସିଂ ଝୁଣ୍ଟି ପଡ଼ିବା ଅପବାଦରୁ ରକ୍ଷା କରନ୍ତୁ ।'''[୮୬]

ଏହି ସମସ୍ତ କଥା ରହିଥିବା ସତ୍ୱେ ବି ସେ ଧର୍ମ ପଥରେ ରହି ଧର୍ମର ରୀତିନୀତି ପାଳୁ ଥିଲେ ବୋଲି କୁହାଗଲା । ଧର୍ମ ସମ୍ପର୍କରେ ଯେଉଁ ଆଲୋଚନା ସେ ଭାରତରେ ପ୍ରଥମଥର ପାଇଁ କରିଥିଲେ, ତାକୁ ଲୋକଲୋଚନରୁ ଦୂରେଇ ରଖିବା ପାଇଁ ଚେଷ୍ଟା କରାଗଲା ।

କେତେକ ବାମପନ୍ଥୀ ଆଦର୍ଶ ଦୃଷ୍ଟିରୁ ସେମାନଙ୍କର ମୂଲ୍ୟାୟନରେ ଭଗତ ସିଂକୁ ସେମାନଙ୍କ ଅର୍ଥରେ କମ୍ୟୁନିଷ୍ଟ କହି ପାରୁ ନାହାଁନ୍ତି ବୋଲି ତାକୁ ''ସନ୍ତ୍ରାସ-ସମାଜବାଦୀ'' ବା ଟେରୋ-ସୋସିଆଲିଷ୍ଟ ବୋଲି କହୁଛନ୍ତି । ଅଥଚ ତ୍ୟାଗ ଓ ବଳିଦାନର ପ୍ରତୀକ ରୂପେ ଛାତ୍ର-ଯୁବକଙ୍କ ସମ୍ମୁଖରେ ତାକୁ ରଖିଛନ୍ତି ପ୍ରେରଣା ପାଇଁ । ଏଠାରେ ବିରୋଧଭାବ ଦେଖା ଦିଏ । ଭଗତ ସିଂଙ୍କ ସମ୍ପର୍କରେ ଗାନ୍ଧୀଙ୍କର ସଚ୍ଚୋଟତା ଓ ଦ୍ୱନ୍ଦହୀନତା ଏଠାରେ ପରିଲକ୍ଷିତ ହୁଏନା । ଗାନ୍ଧିଜୀଙ୍କର ଏହି ଚିନ୍ତା ଭଗତ ସିଂଙ୍କର ବିରୁଦ୍ଧରେ ଗଲେ ମଧ୍ୟ ପ୍ରଶଂସା ଯୋଗ୍ୟ ।

ବାମରୁ ଦକ୍ଷିଣ ପର୍ଯ୍ୟନ୍ତ ସମସ୍ତେ ଭଗତ ସିଂକୁ ଆପଣାର କରିବାକୁ ଚାହୁଁଛନ୍ତି, ଅଥଚ ନିଜନିଜର ମତାଦର୍ଶର ଚସମାରେ ତାକୁ ଦେଖିବାକୁ ଚାହାଁନ୍ତି । କିନ୍ତୁ ତାଙ୍କର ଶେଷ ମତାଦର୍ଶକୁ ଲୋକଲୋଚନକୁ ଆଣିବା ପାଇଁ ସମସ୍ତଙ୍କର ଅନିଚ୍ଛା ।

ଭଗତ ସିଂ ୧୯୦୭ ମସିହା ସେପ୍ଟେମ୍ବର ମାସ ୨୮ ତାରିଖରେ ଜନ୍ମ ହୋଇଥିଲେ ଏବଂ ୧୯୩୧ ମସିହା ମାର୍ଚ୍ଚ ୨୩ ତାରିଖ ଦିନ ତାଙ୍କୁ ଫାଶୀ ଦିଆ ଯାଇଥିଲା । ତେଣୁ ତାଙ୍କର ଆୟୁଷ ଥିଲା ମାତ୍ର ୨୩ ବର୍ଷ ୫ ମାସ ୨୬ ଦିନ । ଏହି ସ୍ୱଳ୍ପ ସମୟର ଜୀବନ ଭିତରେ ସେ ହାସଲ କରିଥିବା ପ୍ରଗାଢ଼ ଜ୍ଞାନର ପରିମାଣ ତଥା ମଣିଷ ଓ ମଣିଷ ସମାଜର ବିଭିନ୍ନ ସମସ୍ୟା ସମ୍ପର୍କରେ ତାଙ୍କର ପରିପକ୍ୱ ମତାମତକୁ ଅନୁଧ୍ୟାନ କଲେ ଚକିତ ହେବାକୁ ପଡ଼ିଥାଏ ।

ସ୍ୱାଧୀନତା ଆନ୍ଦୋଳନରେ ଗାନ୍ଧିଜୀଙ୍କ ଲକ୍ଷ୍ୟ ସହ ସେ ଆଦୌ ଏକମତ ନଥିଲେ । ଗାନ୍ଧିଜୀ ସ୍ୱରାଜର ଅର୍ଥ ଯାହା ବୁଝୁଥିଲେ ତାହା ଭାରତର ଶ୍ରମିକ, ଚାଷୀ ଓ

ସାଧାରଣ ମଣିଷମାନଙ୍କର ଦୁଃଖ ଦୂର କରି ପାରିବନି, ଓଲଟି ବଢ଼ିବାର ସମ୍ଭାବନା ରହିଛି ବୋଲି ସେ କହୁଥିଲେ:

"କଂଗ୍ରେସ ଆନ୍ଦୋଳନର ସମ୍ଭାବନା, ପରାଜୟ ଓ ଫଳପ୍ରାପ୍ତିକୁ ନେଇ ଆମ ମନରେ କୌଣସି ପ୍ରକାର ଭ୍ରମ ଜାତ ହେବା ଉଚିତ ନୁହେଁ । ଆଜି ଯେଉଁ ଆନ୍ଦୋଳନ ଚାଲୁଛି ତାକୁ ଗାନ୍ଧୀବାଦ କହିବା ହିଁ ଠିକ୍ ହେବ । ଏହା ସମସ୍ତ ଅଧିକାର, ସମସ୍ତ ଦୃଢ଼ତାର ସହ ସ୍ୱାଧୀନତା ପାଇଁ ସ୍ଥିର ଦୃଷ୍ଟିକୋଣ ନେଉନି, ଓଲଟି ଶାସନରେ 'ଭାଗଦାରୀ' ହେବା ସପକ୍ଷରେ ରହିଛି । 'ପୂର୍ଣ୍ଣ ସ୍ୱତନ୍ତ୍ରତା'ର କିମ୍ଭୁତକିମାକାର ଅର୍ଥ ସବୁ ବାଢ଼ି ବସୁଛି । ଏହାର ଉପାୟ ମଧ୍ୟ ଅଦ୍ଭୁତ । କିନ୍ତୁ ବିଚାରା ଲୋକମାନଙ୍କର ଏହା କୌଣସି କାମର ନୁହେଁ ।"[୮୭]

"... ଗାନ୍ଧୀବାଦ ... ଚାହୁଁଛି ଯେ ଦିଲ୍ଲୀର ଶାସନ ଗୋରାଙ୍କ ହାତରୁ ମାଟିଆ ବର୍ଣ୍ଣର ଲୋକଙ୍କ ହାତକୁ ଚାଲି ଆସୁ ଏବଂ ଯେହେତୁ ତାହା ଲୋକଙ୍କ ଜୀବନ ଠୁଁ ବହୁତ ଦୂରରେ, ଶାସନ ଗାଦିରେ ବସୁ ବସୁ ଅତ୍ୟାଚାରୀ ପାଲଟି ଯିବାର ବହୁତ ସମ୍ଭାବନା ରହିଛି ।"[୮୮]

ତେଣୁ

"ଆମେ ଗୋରା ଦୁଷ୍ଟଙ୍କ ସ୍ଥାନରେ କଳା ଦୁଷ୍ଟଙ୍କୁ ଆଣି ଆଉ କଷ୍ଟ ସହିବାକୁ ଚାହୁଁନୁ ଦୁଷ୍ଟମାନେ ଏକ ସ୍ୱାର୍ଥୀ ସମୁଦାୟ ଭଳି, ଜଣେ ଆଉ ଜଣକର ସ୍ଥାନ ନେବା ପାଇଁ ସଦା ପ୍ରସ୍ତୁତ ।"[୮୯]

ତେଣୁ ସେ ଚାହୁଁଥିଲେ ଏକ ବିପ୍ଳବ:

"ଆମେ ଏହା ସ୍ପଷ୍ଟ ରୂପେ କହି ଦେବା ପାଇଁ ବାଧ୍ୟ ଯେ ବିପ୍ଳବ କେବଳ ଏକ ସାମାଜିକ ଓଲଟପାଲଟ ଅବା ରକ୍ତାକ୍ତ କନ୍ଦଳକୁ ବୁଝାଏନା । ବୁଝାଏ ଏକ ନୂତନ ତଥା ଉନ୍ନତ ମାନର କାର୍ଯ୍ୟକ୍ରମକୁ ଯାରି ଭିତ୍ତିରେ ସମାଜର ପୁନର୍ନିର୍ମାଣ ହେବ ସୁବ୍ୟବସ୍ଥିତ ରୀତିରେ, ପ୍ରଚଳିତ ଶାସନ ଓ ତାର ବ୍ୟବସ୍ଥାର ଧ୍ୱଂସସ୍ତୂପ ଉପରେ ।"[୯୦]

"ବିପ୍ଳବ ସମ୍ପର୍କରେ ଆମର ଅଭିପ୍ରାୟ ସ୍ପଷ୍ଟ । ଏହି ଶତାବ୍ଦୀରେ ଏହାର କେବଳ ଏକ ମାତ୍ର ଅର୍ଥ ହୋଇ ପାରେ । ଜନତାଙ୍କ ପାଇଁ ଜନତା ରାଜନୈତିକ କ୍ଷମତା ହାସଲ କରିବା । ବାସ୍ତବରେ ଏହା ହିଁ ହେଉଛି 'ବିପ୍ଳବ', ବାକି ସମସ୍ତ ବିଦ୍ରୋହ ତ କେବଳ ମାଲିକମାନଙ୍କର ପରିବର୍ତ୍ତନ ଦ୍ୱାରା ପଚା ପୁଞ୍ଜିବାଦୀ ଦୁର୍ଗନ୍ଧକୁ ଆହୁରି ତୀବ୍ରତର କରେ ।"[୯୧]

" ... ବିପ୍ଳବର ଅର୍ଥ ହେଲା ପ୍ରଚଳିତ ସମାଜ ବ୍ୟବସ୍ଥାର ସମ୍ପୂର୍ଣ୍ଣ ରୂପେ ପତନ ଘଟେଇ ତା ସ୍ଥାନରେ ସମାଜବାଦୀ ସମାଜ ବ୍ୟବସ୍ଥାର ସ୍ଥାପନ । ସେହି ଉଦ୍ଦେଶ୍ୟ ଦୃଷ୍ଟିରୁ ଆମର ଜରୁରୀ ଲକ୍ଷ୍ୟ ହେଲା କ୍ଷମତା ଦଖଲ । ପ୍ରକୃତରେ ରାଷ୍ଟ୍ର ବା ସରକାରୀ ଯନ୍ତ୍ର ହେଉଛି ଶାସକ ଶ୍ରେଣୀ ହାତରେ ଏକ ଅସ୍ତ୍ର ତାର ସ୍ୱାର୍ଥର

ସମ୍ପ୍ରସାରଣ ଓ ସୁରକ୍ଷା ପାଇଁ । ତାକୁ ଆମେ ଛଡ଼େଇ ନେବାକୁ ଚାହୁଁ । ତାକୁ ବ୍ୟବହାର କରି ଆମେ ଆମ ଆଦର୍ଶକୁ ବାସ୍ତବ ରୂପ ଦେବାକୁ ଚାହୁଁ । ଏକ ନୂଆ ଭିତ୍ତି ଉପରେ, ମାର୍କ୍ସବାଦର ଭିତ୍ତି ଉପରେ ସମାଜର ପୁନର୍ଗଠନ କରିବାକୁ ଚାହୁଁ । ଏହି ଲକ୍ଷ୍ୟ ପୂରଣ ପାଇଁ ଆମେ ସରକାରୀ ଯନ୍ତ୍ରକୁ ବ୍ୟବହାର କରିବା ସକାଶେ ସକ୍ଷମ ହେବା ଉଦ୍ଦେଶ୍ୟରେ ଲଢ଼େଇ କରୁଛୁ ।''[୯]

ଶହୀଦ ଭଗତ ସିଂଙ୍କ ପିଢ଼ିର ଲୋକଙ୍କ ପାଇଁ ତାଙ୍କ ଜୀବନ ହିଁ ଥିଲା ଏକ ଖୋଲା ବହି । ତେଣୁ ସେମାନଙ୍କ ପାଇଁ ସେହି ବହି ପଢ଼ିବାରେ କିଛି ଅସୁବିଧା ହେଲାନି । ସେହି ଜୀବନର ପ୍ରଭାବର ପ୍ରମାଣ ମିଳେ ଭଗତ ସିଂ ଭାରତରେ ପ୍ରଥମେ ଜନପ୍ରିୟ କରିଥିବା 'ଇନ୍‌କିଲାବ୍ ଜିନ୍ଦାବାଦ' ସ୍ଲୋଗାନରୁ ତଥା ବିପ୍ଳବୀମୁଖୀ ବିଭିନ୍ନ ଜନ ଆନ୍ଦୋଳନରୁ । ସ୍ୱାଧୀନତା ପ୍ରାପ୍ତି ପର୍ଯ୍ୟନ୍ତ ଏହାର ତ ବହୁଳ ବ୍ୟବହାର ଥିଲା, କିନ୍ତୁ ସ୍ୱାଧୀନତା ପ୍ରାପ୍ତି ପରେ ମଧ ଏହା, ଯଥାର୍ଥ କାରଣ ଥାଇ ବା ନଥାଇ ହେଉଥିବା ଛୋଟ ଛୋଟରୁ ବିରାଟ ବିରାଟ ଜନ ଆନ୍ଦୋଳନଗୁଡ଼ିକର ସ୍ଲୋଗାନ ହୋଇ ଆସୁଛି ।

କିନ୍ତୁ ପର ପିଢ଼ିର ଲୋକମାନଙ୍କ ପାଇଁ ସେହି ବହି ବନ୍ଦ ହୋଇ ଯାଇଥିଲା । ନିଜନିଜର ସ୍ୱାର୍ଥକୁ ନେଇ ତାଙ୍କୁ କିଏ କେଉଁ ଭାବରେ ଲୋକଙ୍କ ସାମନାରେ ଉପସ୍ଥାପନ କଲେ, କିଏ କହିଲା ତାଙ୍କୁ ସନ୍ତ୍ରାସବାଦୀ, କିଏ କହିଲା ସ୍ୱାଧୀନତା ସଂଗ୍ରାମୀ, କିଏ କହିଲା ସନ୍ତ୍ରାସ-ସମାଜବାଦୀ । କିନ୍ତୁ ତାଙ୍କର ଅସଲ, ଶେଷ ଚିନ୍ତାର ଉପସ୍ଥାପନା ହେଲା ନାହିଁ, ବିଚାର ଆଲୋଚନା ହେଲା ନାହିଁ । ସମସ୍ତେ ଯୁବକମାନଙ୍କୁ କେବଳ ତାଙ୍କର ତ୍ୟାଗ ଓ ବଳିଦାନର ଗାଥା ଶୁଣେଇଲେ । ତାଙ୍କୁ ଯୁବ ପିଢ଼ିର ଆଦର୍ଶ କଲେ । ସେ ଯୁବ ପିଢ଼ି ପାଇଁ ଏକ ପ୍ରତୀକ ହେଇଗଲେ । ସମସ୍ତେ ଯୁବକମାନଙ୍କୁ କହୁଛନ୍ତି: ଦେଶ ପାଇଁ ତ୍ୟାଗ କର, ବଳିଦାନ ଦିଅ (ପଢ଼ନ୍ତୁ, ଆମ ପାଇଁ ତ୍ୟାଗ କର, ବଳିଦାନ ଦିଅ) । ସନ୍ତ୍ରାସବାଦ ପାଇଁ ତ ସାଧାରଣତଃ କେହି ତ୍ୟାଗ କରିବେନି, ଆତ୍ମବଳି ଦେବେନି । ଦେଶ ଯେହେତୁ ସ୍ୱାଧୀନ ହୋଇ ସାରିଲାଣି, ତାରି ପାଇଁ ତ୍ୟାଗ ବା ଆତ୍ମବଳି ଦେବାର ପ୍ରଶ୍ନ ଉଠେନା — ସ୍ୱାଧୀନ ଦେଶରେ ସ୍ୱାଧୀନତା ପାଇଁ ତ୍ୟାଗ କରିବାରେ, ଆତ୍ମବଳି ଦେବାରେ କୌଣସି ଅର୍ଥ ନାହିଁ । ଆଉ ରହିଲା ଜନତା । ଜନତାଙ୍କ ପାଇଁ ଭଗତ ସିଂଙ୍କ ଦରଦ, ତାଙ୍କର ସ୍ୱପ୍ନ — ବିପ୍ଳବ, ଶ୍ରମିକ ଚାଷୀଙ୍କ ସରକାର, ସମାଜବାଦୀ ସମାଜ, ସମସ୍ତ ପ୍ରକାରର ଶୋଷଣରୁ ମଣିଷର ମୁକ୍ତି କଥା ତ ଆଲୋଚନା ହେଉନି । ତେଣୁ ଆମ ନେତାମାନଙ୍କର ଜନସେବା ହିଁ ଯୁବ ପିଢ଼ିର ଆଦର୍ଶ ହୋଇ ରହିଲା । କାଳକ୍ରମେ ଯୁବକମାନେ ନେତା ହେଲେ ଓ ତାଙ୍କର ଜନସେବା ପର ପିଢ଼ି ପାଇଁ ଆଦର୍ଶ ହେଲା । ଏହି ଭାବେ କ୍ରମାଗତ ଷାଠିଏ ବର୍ଷର ସେବାରେ ଭାରତର ସାଧାରଣ ମଣିଷ କିପରି ଅବସ୍ଥାରେ ଅଛନ୍ତି ତାହା ସମସ୍ତେ ଜାଣନ୍ତି ।

ଚାଷୀର ଅବସ୍ଥା ସମ୍ପର୍କରେ ଏକ ନିରାଟ ସତକଥା ଗାନ୍ଧିଜୀ ଲେଖିଛନ୍ତି,

"...ଚାଷୀକୁ ଯେତେବେଳେ ତାର ଦୁର୍ଦ୍ଦଶା ସମ୍ପର୍କରେ ସଚେତନ କରାଯିବ ଓ ସେ ଯେତେବେଳେ ଜାଣିବ ଯେ 'ଭାଗ୍ୟ' ତାକୁ ଏହି ଅସହାୟ ଅବସ୍ଥାକୁ ଆଣି ନାହିଁ, ଆଣିଛି ପ୍ରଚଳିତ ଶାସନ ବ୍ୟବସ୍ଥା, ସେତେବେଳେ ତାର ଅଧୈର୍ଯ୍ୟତା ଯୋଗୁଁ ସେ, ସାହାଯ୍ୟ ରହିତ ଅବସ୍ଥାରେ, ସାମ୍ବିଧାନିକ ଓ ଅସାମ୍ବିଧାନିକ, ଏପରିକି ହିଂସା ଓ ଅହିଂସା ଉପାୟ ମଧ୍ୟରେ ଥିବା ଭେଦଭାବ ଭୁଲି ଯିବ । ସଠିକ ଦିଗରେ ଚାଷୀମାନଙ୍କୁ ପରିଚାଳିତ କରିବା ପାଇଁ କଂଗ୍ରେସ ଆଶା କରୁଛି ।"[୧୩]

ଭାଗ୍ୟ ଆଦରି, 'କପାଳ ଲିଖନ କେ କରିବ ଆନ' ଦର୍ଶନକୁ ଜାବୁଡ଼ି ଧରି ଆଜି ମଧ୍ୟ ଚାଷୀ ପଡ଼ି ରହିଛି । ଚାଷୀମାନଙ୍କୁ କେତେ ଦୂର ସଚେତନ କରାଗଲା ଓ ଚାଷୀମାନଙ୍କୁ କେଉଁ ସଠିକ ଦିଗରେ ପରିଚାଳିତ କରାଗଲା ତାହା କଂଗ୍ରେସ ହିଁ ଜାଣେ । ଚାଷୀମାନଙ୍କ ଅବସ୍ଥା ଯାହା ଭାରତର ସାଧାରଣ ମଣିଷମାନଙ୍କର ଅବସ୍ଥା ତାହା । ସେମାନଙ୍କ ଅବସ୍ଥା ପାଇଁ ପୁଞ୍ଜିବାଦୀ ବ୍ୟବସ୍ଥା, ପ୍ରଚଳିତ ଶାସନ ବ୍ୟବସ୍ଥା ଦାୟୀ ବୋଲି ଜାଣି ନାହାଁନ୍ତି ଅବା କହିବା ଶିଖି ନାହାଁନ୍ତି । ସେହି ଅବସ୍ଥାରୁ ଉଦ୍ଧାରିବା ଆଶାରେ ସେମାନେ ଜ୍ୟୋତିଷମାନଙ୍କ ନିକଟକୁ ଅବା ମନ୍ଦିରକୁ ଦଉଡ଼ୁଛନ୍ତି । ଏହି ଦିଗରେ ଗତି କରିବା ପାଇଁ ମଧ୍ୟ ତାଙ୍କୁ ବହୁଳ ଭାବେ ପ୍ରୋତ୍ସାହିତ କରା ଯାଉଛି । ସେହି ଦିଗରେ ମଣିଷ ଯେତେ ବେଶି ଯିବେ, ପୁଞ୍ଜିବାଦ ସେତେ ବେଶି ନିରାପଦ ।

ଦେଶର ଶାସନ ବ୍ୟବସ୍ଥା ପୁଞ୍ଜିପତି ଶ୍ରେଣୀର ଅଦୃଶ୍ୟ ଇଙ୍ଗିତ ଦ୍ୱାରା ହିଁ ପରିଚାଳିତ ହୋଇଥାଏ । ସେମାନଙ୍କ ହାତକୁ ଦେଖି ହୁଏନି, କିନ୍ତୁ ଶାସନର ଲଗାମଟା ସେମାନଙ୍କ ହାତରେ ଥାଏ । ଅଧିଷ୍ଠିତ ସରକାରଟା ମୁଖା ମାତ୍ର । ଯେମିତି ଟିଭିରେ ଦଶପନ୍ଦର ମିନିଟ ଖବର ପଢ଼ିବା ପାଇଁ ଦୁଇ ଜଣ, ସାଧାରଣତଃ ଜଣେ ନାରୀ ଆଉ ଜଣେ ପୁରୁଷ, ଥାଆନ୍ତି — କାଳେ ସାରା ସମୟ ପାଇଁ ଗୋଟିଏ ମୁହଁ ଦେଖି ଆପଣଙ୍କୁ ବିରକ୍ତ ଲାଗିପାରେ! କିନ୍ତୁ ଖବର ସମ୍ପାଦକ ଯାହା ଲେଖି ଦେଇଥିବେ ଏମାନେ ତାହା ପଢ଼ିବା ପାଇଁ ବାଧ୍ୟ, ଅବାଧ୍ୟ ହେଲେ ସେମାନଙ୍କ ବିରୁଦ୍ଧରେ ଶାସ୍ତିମୂଳକ କାର୍ଯ୍ୟାନୁଷ୍ଠାନ ହେବ । ଠିକ୍ ସେମିତି ସରକାର କଣ କରିବେ କଣ ନକରିବେ ପୁଞ୍ଜିପତିମାନେ 'ଲେଖି' ଦିଅନ୍ତି । ସରକାର ତାହା ହିଁ କରିବେ, ଅନ୍ୟଥା ଟ୍ରକରେ ବୁହା ହୋଇ ଟଙ୍କା ଆସିବ, ଏମ୍‌ପି ଏମ୍‌ଏଲ୍‌ଏ କିଣା ହେବେ, ଅନାସ୍ଥା ପ୍ରସ୍ତାବ ଆସିବ, ସରକାରର ପତନ ହେବ । ପୁଣି ଯିଏ ସେହି କଥା କରିବା ପାଇଁ ରାଜି ହେବେ, ସେ ସରକାର ଗଢ଼ିବା ପାଇଁ ସମସ୍ତ ବ୍ୟବସ୍ଥା କରାଯିବ । ସରକାର ଚାଲିବ । ପୁଞ୍ଜିପତିମାନଙ୍କର କାମ ମଧ୍ୟ ଚାଲିବ । ଗୋଟିଏ ସରକାରକୁ ଦେଖି ଦେଖି ଆପଣଙ୍କୁ କାଳେ ବିରକ୍ତ ଲାଗିବ, ସେଥିପାଇଁ ପାଞ୍ଚ ବର୍ଷରେ ଥରେ ଭୋଟ ଦେଇ ସରକାର ବଦଳେଇବାର ବ୍ୟବସ୍ଥା ଅଛି । ବିରକ୍ତ ଲାଗୁନି ତ ଭୋଟ ଦେଇ ଆଉ ପାଞ୍ଚ ବର୍ଷ ରଖନ୍ତୁ, ନଚେତ୍ ଭୋଟ ଦେଇ ସରକାରଟାକୁ

ବଦଳାନ୍ତୁ । ଆପଣ ଚିତକୁ ଭୋଟ ଦିଅନ୍ତୁ ଅବା ମାଖକୁ ଭୋଟ ଦିଅନ୍ତୁ, ଉଭୟେ ସେହି ଗୋଟିଏ ଟଙ୍କାର ଦୁଇ ପାଖ ମାତ୍ର । ଗତ ଷାଠିଏ ବର୍ଷ ମଧ୍ୟରେ କେତେ ସରକାର ନ ବଦଳିଛି, ତଥାପି ସାଧାରଣ ଲୋକଙ୍କର ଅବସ୍ଥାରେ ବିଶେଷ କିଛି ପରିବର୍ତ୍ତନ ହୋଇନି ।

'ବିଶେଷ କିଛି' ବୋଲି କହିଲି, କାରଣ ଆଗରୁ ତ ବିଶ୍ୱସାରା ପୁଞ୍ଜିପତିମାନଙ୍କର ରାଜତ୍ୱ ଚାଲୁଥିଲା । ବିଶ୍ୱସାରା ସାଧାରଣ ମଣିଷ ଶୋଷଣ କଷଣ ମଧ୍ୟରେ ବଞ୍ଚୁଥିଲେ । କିନ୍ତୁ ଋଷିଆରେ ୧୯୧୭ ମସିହାରେ ଯେଉଁ ମହାନ ସମାଜବାଦୀ ବିପ୍ଲବ ହେଲା ତାରି ଫଳରେ ସେଠାରେ ଶ୍ରମିକ ଚାଷୀ ଓ ଖଟିଖିଆଙ୍କ ପାଇଁ ଏକ ସୁଖର ସଂସାର ସୃଷ୍ଟି ହେଲା । ପୃଥିବୀର ବହୁ ଦେଶରୁ ବହୁ ଗଣ୍ୟମାନ୍ୟ ବ୍ୟକ୍ତି ସେଠାରେ କଣସବୁ ହେଉଥିଲା ତାହା ସ୍ୱଚକ୍ଷୁରେ ଦେଖିବା ପାଇଁ ସେହି ଦେଶକୁ ବୁଲି ଯାଇଥିଲେ । ଭାରତରୁ ମଧ୍ୟ ରବିନ୍ଦ୍ରନାଥ ଠାକୁର, ଜବାହରଲାଲ ନେହେରୁଙ୍କ ଭଳି ପ୍ରତିଷ୍ଠିତ ବ୍ୟକ୍ତିମାନେ ଯାଇଥିଲେ । ବିଶ୍ୱସାରା ଋଷିଆର ସମାଜବାଦୀ ସମାଜର ପ୍ରଶଂସା କରାଗଲା, ସାଧାରଣ ମଣିଷ ପାଇଁ ସେଠି ଯେଉଁ ସୁଖର ସମ୍ଭାର ସୃଷ୍ଟି ହୋଇଥିଲା ତାର ପ୍ରଶଂସା କରାଗଲା । ସେଭଳି ଏକ ସମାଜ ପ୍ରତିଷ୍ଠାର ସ୍ୱପ୍ନକୁ ନେଇ ବିଭିନ୍ନ ଦେଶରେ ଆନ୍ଦୋଳନ ମୁଣ୍ଡ ଟେକିଲା । ଭାରତ ମଧ୍ୟ ସେଥିରୁ ବାଦ ପଡ଼ି ନଥିଲା । ସେତେବେଳେ ଭାରତରେ ସମାଜବାଦୀ ସମାଜ ପ୍ରତିଷ୍ଠାର ସ୍ୱପ୍ନ ଯେଉଁମାନେ ଦେଖୁଥିଲେ ସେମାନଙ୍କ ମଧ୍ୟରେ ଭଗତ ସିଂ ଥିଲେ ଅନ୍ୟତମ । ଏହି ଆନ୍ଦୋଳନଗୁଡ଼ିକୁ ଭଣ୍ଡୁର କରିବା ପାଇଁ ସେତେବେଳେ ବହୁତ ଦେଶ ନିଜନିଜକୁ ଜନମଙ୍ଗଳ ରାଷ୍ଟ୍ର ରୂପେ ଘୋଷଣା କରିଥିଲେ । ଯେଉଁ କିଛିଟା ପରିବର୍ତ୍ତନ ହୋଇଛି ତାହା ହେଉଛି ଏହି ଜନମଙ୍ଗଳ ରାଷ୍ଟ୍ରର ଫଳ । ଯୁକ୍ତରାଷ୍ଟ୍ର ଆମେରିକା ମଧ୍ୟ ଏଥିରୁ ବାଦ ପଡ଼ି ନଥିଲା । ସୋଭିଯେତ୍ ୟୁନିଅନକୁ ତାର ନେତୃମଣ୍ଡଳୀ ଉପର ଆତୁ ଭାଙ୍ଗି ଦେଲେ, ବିଶ୍ୱର ସମାଜବାଦୀ ଅର୍ଥବ୍ୟବସ୍ଥାକୁ ଉପର ଆତୁ ଭୁଶୁଡ଼େଇ ଦେଲେ । ସମାଜବାଦ କାମର ନୁହେଁ, ସମାଜବାଦ ବିଫଳ ହେଲା, ପୁଞ୍ଜିବାଦର ବିଜୟ ହେଲା, ମତାଦର୍ଶର ଅନ୍ତଃ ହେଲା ବୋଲି ପୁଞ୍ଜିବାଦର ଚାଟୁକାରମାନେ ହୁକେ ହୋ ରୀତିରେ ଗଗନ କମ୍ପେଇଲେ । ଆଉ ପ୍ରଥମ ବିଶ୍ୱ, ଦ୍ୱିତୀୟ ବିଶ୍ୱ, ତୃତୀୟ ବିଶ୍ୱ ନୁହେଁ, ବର୍ତ୍ତମାନ କେବଳ ଗୋଟିଏ ବିଶ୍ୱ ଓ ତାହା ହେଉଛି ପୁଞ୍ଜିବାଦର ବିଶ୍ୱ ବୋଲି ଗଗନ କମ୍ପେଇଲେ । ଏକ ମେରୁୟ ବିଶ୍ୱ ହେଲା ବୋଲି କହିଲେ । ତଥାପି *କମ୍ୟୁନିଷ୍ଟ ଇସ୍ତାହାର* ର ପ୍ରଭାବରୁ ଆଜି ସୁଦ୍ଧା ଖୋଦ୍ ଯୁକ୍ତରାଷ୍ଟ୍ର ଆମେରିକା ମୁକ୍ତ ହୋଇନି ବୋଲି ଆମେରିକାର କିଛି ଲୋକଙ୍କର ଖେଦ । *କମ୍ୟୁନିଷ୍ଟ ଇସ୍ତାହାର* ର ଦ୍ୱିତୀୟ ପରିଚ୍ଛେଦରେ ସୂଚୀତ ଏହି ଦଶ ଦଫା:

"୧. ଭୂସମ୍ପତ୍ତି ସତ୍ତ୍ୱ ଉଚ୍ଛେଦ ଓ ଜନକଲ୍ୟାଣାର୍ଥେ ଭୂ-ଖଜଣାର ବ୍ୟବହାର ।

"୨. ଅଧିକ ପ୍ରଗତିଶୀଳ ଓ କ୍ରମବର୍ଦ୍ଧମାନ ଆୟକର ।

"୩. ସମସ୍ତ ଉତ୍ତରାଧିକାର ସତ୍ତ୍ୱ ଉଚ୍ଛେଦ ।

"୪. ଦେଶତ୍ୟାଗୀ ଓ ବିଦ୍ରୋହୀମାନଙ୍କ ସମ୍ପତ୍ତି ବାଜ୍ୟାପ୍ତି ।

"୫. ସମ୍ପୂର୍ଣ୍ଣ ଏକଚାଟିଆ ଅଧିକାର ଥାଇ ତଥା ରାଷ୍ଟ୍ରର ପୁଞ୍ଜିରେ ଗଠିତ ଏକ ଜାତୀୟ ବ୍ୟାଙ୍କ ଜରିଆରେ ସମସ୍ତ ଋଣ ଦେଇ ରାଷ୍ଟ୍ର ହାତରେ ସମସ୍ତ ଋଣର କେନ୍ଦ୍ରୀକରଣ ।

"୬. ଯୋଗାଯୋଗ ଓ ଯାତାୟତର ସମସ୍ତ ସାଧନଗୁଡ଼ିକୁ ରାଷ୍ଟ୍ର ହାତରେ କେନ୍ଦ୍ରୀକରଣ ।

"୭. ରାଷ୍ଟ୍ରାୟତ୍ତ କଳକାରଖାନା ଉତ୍ପାଦନର ଉପକରଣଗୁଡ଼ିକର ସଂପ୍ରସାରଣ, ଅନାବାଦୀ ଜମିର ଆବାଦୀ ଓ ଏକ ସାଧାରଣ ଯୋଜନା ଅନୁସାରେ ମାଟିର ଉର୍ବରତାର ସାଧାରଣ ବିକାଶ ।

"୮. ପରିଶ୍ରମ ପାଇଁ ସମସ୍ତଙ୍କର ସମାନ ଉତ୍ତରଦାୟିତ୍ୱ । ଶିଳ୍ପ, ବିଶେଷ କରି କୃଷିର ଉନ୍ନତି ପାଇଁ ଶ୍ରମବାହିନୀର ସ୍ଥାପନା ।

"୯. ଉତ୍ପାଦନ ଶିଳ୍ପ ସହ କୃଷିର ସଂଯୋଗ, ଦେଶ ସାରା ଜନସଂଖ୍ୟାର ଅଧିକ ସମବଣ୍ଟନ ଦ୍ୱାରା ସହର ଓ ମଫସଲ ମଧ୍ୟରେ ଥିବା ପାର୍ଥକ୍ୟ ଲୋପ ।

"୧୦. ସର୍ବସାଧାରଣ ବିଦ୍ୟାଳୟରେ ସମସ୍ତ ଶିଶୁଙ୍କ ପାଇଁ ନିଶୁଳ୍କ ଶିକ୍ଷା । ପ୍ରଚଳିତ ରୂପର ଶିଶୁମାନଙ୍କର କାରଖାନା ଶ୍ରମର ଉଚ୍ଛେଦ । ଶିଳ୍ପ ଉତ୍ପାଦନ ସହ ଶିକ୍ଷାର ସଂଯୋଗ । ଇତ୍ୟାଦି, ଇତ୍ୟାଦି ।"[୧୪]

କାର୍ଯ୍ୟକ୍ରମରୁ ଆମେରିକା ମୁକ୍ତ ହୋଇନି ଓ 'ଆଜି ମଧ୍ୟ ଆମେ *କମ୍ୟୁନିଷ୍ଟ ଇସ୍ତାହାର* ର କରାଳ ଛାୟା ତଳେ ବଞ୍ଚିଛେ କି?' ଭଳି ପ୍ରଶ୍ନର ଆଲୋଚନା ଆମେରିକାର କିଛି ଲୋକ ଇଣ୍ଟେରନେଟ୍‌ରେ ଓ ଅନ୍ୟତ୍ର କରୁଛନ୍ତି । ମୋର ଏହି ସବୁ କଥା କହିବାର ଉଦ୍ଦେଶ୍ୟ ହେଲା: ଭାରତର ସାଧାରଣ ମଣିଷମାନେ ଏହା ଭଲ ଭାବେ ବୁଝିବା ଆବଶ୍ୟକ ଯେ ସମାଜବାଦୀ ଆନ୍ଦୋଳନ ସହ ସେମାନଙ୍କର ସୁଖ ଜଡ଼ିତ ହୋଇ ରହିଛି । ସମାଜବାଦୀ ଆନ୍ଦୋଳନ ଯେତେ ଅଧିକ ବଳିଷ୍ଠ ହେବ, ପୁଞ୍ଜିବାଦୀ ପଞ୍ଝାରୁ ସେମାନେ ସେତେ ଅଧିକ ସୁଖ ଛଡ଼ାଇ ଆଣି ପାରିବେ । ତଥାପି ସେମାନଙ୍କର ଲକ୍ଷ୍ୟ ସର୍ବଦା ସମାଜବାଦୀ ବିପ୍ଳବରେ ହିଁ ନିବିଦ୍ଧ ରହିବା ଉଚିତ ।

ସୋଭିଏତ୍ ୟୁନିଅନ ଭଳିଆ ଏକ ରାଷ୍ଟ୍ର ପ୍ରତିଷ୍ଠା କରିବା ଭଗତ ସିଂଙ୍କର ସ୍ୱପ୍ନ ଥିଲା ଓ ସେଥି ପାଇଁ ସେ ମାର୍କ୍ସବାଦ-ଲେନିନବାଦ ଦର୍ଶନ ଦ୍ୱାରା ଅନୁପ୍ରାଣିତ ହୋଇଥିଲେ । ଫାଶୀ ପାଇବା ପୂର୍ବରୁ ଜେଲ୍‌ର କାଳକୋଠରୀରେ ବସି ସେ ଲେଖିଥିବା ଶେଷ ଲେଖାଗୁଡ଼ିକ ମଧ୍ୟରୁ *'ମୁଁ ନାସ୍ତିକ କାହିଁକି'*, *'ଯୁବ ରାଜନୈତିକ କର୍ମୀଙ୍କ ପ୍ରତି'*, *'ଡ୍ରିମ୍‌ଲ୍ୟାଣ୍ଡ ପାଇଁ ମୁଖବନ୍ଧ'* ରେ ତାଙ୍କର ଶେଷ ଚିନ୍ତାର କେତେକ ସ୍ପଷ୍ଟ ଚିତ୍ର ମିଳେ ।

ଭାରତରେ ବିପ୍ଳବ ସଂଗଠିତ କରିବା ପାଇଁ ଭଗତ ସିଂ ଯୁବକମାନଙ୍କୁ ଆହ୍ବାନ କରିଥିଲେ । ଏଠାରେ ଗୋଟିଏ ପ୍ରଶ୍ନ ଉଠିପାରେ —କେବଳ ଯୁବକମାନଙ୍କୁ କାହିଁକି, ଅନ୍ୟମାନଙ୍କୁ କାହିଁକି ନୁହେଁ? ସେ କହିଛନ୍ତି,

> "ବିପ୍ଳବ ପାଇଁ ଜନଗଣଙ୍କୁ ପ୍ରସ୍ତୁତ କରିବା ଓ ଶକ୍ତିଗୁଡ଼ିକୁ ସଂଗଠିତ କରିବା ହେଉଛି ଏକ କଠିନ କାର୍ଯ୍ୟ । ଏବଂ ସେଥିପାଇଁ ବିପ୍ଳବୀ କର୍ମୀମାନଙ୍କ ତରଫରୁ ବହୁତ କିଛି ଉତ୍ସର୍ଗ କରିବାକୁ ପଡ଼ିଥାଏ । ମୁଁ ସ୍ପଷ୍ଟ ରୂପେ ଏହା କହିବାକୁ ଚାହେଁ ଯେ ତୁମେ ଯଦି ଜଣେ ବ୍ୟବସାୟୀ, ତୁମେ ଯଦି ପରିବାର ଅବା ବିଷୟସୁଖରେ ବୁଡ଼ି ରହିଛ, ତେବେ ଦୟାକରି ନିଆଁ ସହିତ ଖେଳ ନାହିଁ । ଜଣେ ନେତା ହିସାବରେ ତୁମେ ପାର୍ଟିର କୌଣସି କାମରେ ଆସିବନି । ଏହି ଭଳିଆ ନେତା ଆମ ପାଖେ ଅନେକ ଅଛନ୍ତି ଯେଉଁମାନେ କେତେକ ସନ୍ଧ୍ୟା ଖାଲି ରଖନ୍ତି ଭାଷଣ ଦେବା ପାଇଁ । ସେମାନଙ୍କ ଦ୍ବାରା କିଛି ହେବନି । ଆମର ଦରକାର — ଲେନିନଙ୍କ ପ୍ରିୟ ଭାଷାରେ କହିଲେ — "ପେଷାଦାର ବିପ୍ଳବୀ" । ସଦା-ସମୟୀ କର୍ମୀ ଯେଉଁମାନଙ୍କର ବିପ୍ଳବ ଛଡ଼ା ଅନ୍ୟ କୌଣସି ଇଚ୍ଛା ନାହିଁ, ବିପ୍ଳବ ଛଡ଼ା ଜୀବନରେ ଅନ୍ୟ କୌଣସି କାମ ନାହିଁ । ଏହି ଭଳିଆ କର୍ମୀ ପାର୍ଟି ଭିତରେ ଯେତେ ଅଧିକ ସଂଖ୍ୟାରେ ସଂଗଠିତ ହେବେ, ତୁମ ସଫଳତାର ସମ୍ଭାବନା ସେତେ ବେଶି ।"[୧]

ତେଣୁ ଏଠାରେ କେବଳ ବୟସର କଥା ନୁହେଁ, ଜଣେ ମଣିଷ ବିପ୍ଳବ ସଂଗଠିତ କରିବା ପାଇଁ ଝଞ୍ଜାଳମୁକ୍ତ କି ନୁହେଁ, ସେଇ ହେଉଛି ଅସଲ କଥା । ଯୁବକଟିଏ ସାଂସାରିକ ଝଞ୍ଜାଳରେ ବୁଡ଼ି ରହିଥିଲେ ବିପ୍ଳବ ପାଇଁ ସମୟ ଦେବା ତାହା ପକ୍ଷେ କଷ୍ଟକର ବ୍ୟାପାର ହୋଇପାରେ, ଅଥଚ ଅନ୍ୟ ଜଣେ ପରିଣତ ବୟସର ହୋଇଥିଲେ ବି ଝଞ୍ଜାଳମୁକ୍ତ ଥିଲେ ବିପ୍ଳବ ପାଇଁ ସଦାସମୟୀ ପେଷାଦାର ବିପ୍ଳବୀ ହୋଇ ପାରନ୍ତି । ତେଣୁ ଏହା ଯୁବସୁଲଭ ଝଞ୍ଜାଳମୁକ୍ତ ବିପ୍ଳବୀ ଭାବନାର କଥା, କେବଳ ବୟସର କଥା ନୁହେଁ ।

ବିପ୍ଳବ କରିବାକୁ ହେଲେ ଦେଶରେ ବୈପ୍ଳବିକ ଚିନ୍ତାର ବିକାଶ ଆବଶ୍ୟକ । ଭଗତ ସିଂଙ୍କ ସମୟରେ ମଧ୍ୟ ଏହି ଚିନ୍ତାର ବିକାଶ ହୋଇ ନଥିବା କଥା ସେ ଅନୁଭବ କରିଥିଲେ । ସେ ଲେଖିଥିଲେ,

> "ବୁଦ୍ଧିଜୀବୀ ଓ ପରିଶ୍ରମୀ କର୍ମକର୍ତ୍ତାମାନେ ହିଁ ବିପ୍ଳବର ଜନ୍ମଦାତା ହୁଅନ୍ତି । ଦୁର୍ଭାଗ୍ୟବଶତଃ ଭାରତୀୟ ବିପ୍ଳବର ବୌଦ୍ଧିକ ପକ୍ଷ ସର୍ବଦା ଦୁର୍ବଳ ରହି ଆସିଛି ।"[୨]

ଆଜି ମଧ୍ୟ ସେହି ଅବସ୍ଥା ଜାରୀ ରହିଥିଲା ଭଳି ମନେ ହୁଏ । ଭାରତର ବାସ୍ତବ ଅବସ୍ଥାକୁ ଅନୁଧ୍ୟାନ କରି ଏକ ଦୃଢ଼ ବୈପ୍ଳବିକ କାର୍ଯ୍ୟକ୍ରମ ପ୍ରସ୍ତୁତ କରିବା ପାଇଁ ଯେଉଁ ବୌଦ୍ଧିକ ସମୁଦ୍ର ମନ୍ଥନ ଆବଶ୍ୟକ ତାହା ଭାରତରେ ହୋଇଥିଲା ଭଳି ମନେ

ହୁଏନା । ବହୁତ ତତ୍ତ୍ୱବିତ୍ ଅଛନ୍ତି, କିନ୍ତୁ ପ୍ରତ୍ୟେକେ ବିଚାରୁଛନ୍ତି ଯେ ଭାରତର ବିପ୍ଳବ ସମ୍ପର୍କରେ ସେ ଯାହା କହୁଛନ୍ତି ତାହା ହିଁ ଠିକ୍ ଓ ଶେଷ କଥା । ଏହି ଭାବେ ଆଜି ଭାରତରେ କମ୍ୟୁନିଷ୍ଟ ଆନ୍ଦୋଳନ ବିଭାଜିତ । ଏକ ବୌଦ୍ଧିକ ସମୁଦ୍ର ମନ୍ଥନ ପ୍ରକ୍ରିୟା ମଧ୍ୟରୁ ଏକ ସର୍ବ ଭାରତୀୟ ନେତୃତ୍ୱ ଉଭା ହେବାର ଯେଉଁ ସମ୍ଭାବନା ତାହା ବାସ୍ତବ ରୂପ ନେଉନି । ଯଦିଚ୍ ଭାରତର ସାଧାରଣ ମଣିଷମାନଙ୍କ ପାଇଁ ଦୁର୍ଦ୍ଦିନର ସମୟ ମାଡ଼ି ଆସୁଛି, ତେବେ ବି ଭାରତୀୟ କମ୍ୟୁନିଷ୍ଟ ଆନ୍ଦୋଳନରେ ଐକ୍ୟ ଭାବ ପ୍ରତିଷ୍ଠା ହେଉନି । ସେତେବେଳର ସ୍ଥିତିକୁ ଦେଖି ଭଗତ ସିଂ କହିଥିଲେ,

> "ଯଦି ଆଜି ବି ଆମର ଶକ୍ତି ବିଛୁରିତ ହୋଇ ରହିବ ଓ ବିପ୍ଳବୀ ଶକ୍ତିଗୁଡ଼ିକ ଏକଜୁଟ ହୋଇ ଅଗ୍ରସର ହୋଇ ପାରିବେନି, ତେବେ ଏପରି ସଂକଟ ଆସିବ ଯାହାକୁ ସମ୍ଭାଳିବା ପାଇଁ ଆମେ ପ୍ରସ୍ତୁତ ହୋଇ ନଥିବା ।"[୨]

ଆଜିର ପରିସ୍ଥିତିରେ ବି ଭଗତ ସିଂଙ୍କ ଏହି କଥା ଦୋହରା ଯାଇ ପାରେ । କମ୍ୟୁନିଷ୍ଟ ଆନ୍ଦୋଳନର ଐକ୍ୟ ଆଜିର ଐତିହାସିକ ଆବଶ୍ୟକତା ।

ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମ ପାଇଁ ଆହ୍ୱାନ ଦିଆ ଗଲାଣି । ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମ ଭଗତ ସିଂଙ୍କ ଅର୍ଥର ସ୍ୱାଧୀନତା ସଂଗ୍ରାମ ହେଉ । ଭଗତ ସିଂ ସେହି ସ୍ୱାଧୀନତା ସଂଗ୍ରାମର ପ୍ରତୀକ ହୁଅନ୍ତୁ । ତାଙ୍କରି ପ୍ରେରଣା ଭାରତର ସମାଜବାଦୀ ଆନ୍ଦୋଳନରେ ଐକ୍ୟ ପ୍ରତିଷ୍ଠା କରୁ । ସେ କେବଳ ଛାତ୍ର ଯୁବକମାନଙ୍କ ପାଇଁ ପ୍ରେରଣାର ଉତ୍ସ ନହୋଇ ସମଗ୍ର ସମାଜବାଦୀ ଆନ୍ଦୋଳନ ପାଇଁ ପ୍ରେରଣାର ଉତ୍ସ ହୁଅନ୍ତୁ ।

ସମାଲୋଚନା ଓ ସ୍ୱାଧୀନ ଚିନ୍ତା, ଏହି ଦୁଇଟି ହେଉଛି ଜଣେ ବିପ୍ଳବୀର ଅପରିହାର୍ଯ୍ୟ ଗୁଣ ବୋଲି ଭଗତ ସିଂ କହିଛନ୍ତି ଓ ନିଜ ଚିନ୍ତାରାଜ୍ୟରେ ତଥା କାର୍ଯ୍ୟ କ୍ଷେତ୍ରରେ ନିର୍ଭୀକ ଭାବେ ଏବଂ ଦକ୍ଷତାର ସହ ସେଗୁଡ଼ିକର ପ୍ରୟୋଗ ମଧ୍ୟ କରିଛନ୍ତି । ଏହି ଦୁଇଟିର ଅଭାବ ଭାରତର କମ୍ୟୁନିଷ୍ଟ ଆନ୍ଦୋଳନରେ ଦେଖା ଦିଏ । ଗ୍ଲାସନୋସ୍ତ ଓ ପେରିସ୍ତ୍ରୋଇକାର ଆବଶ୍ୟକତା ସୋଭିୟେତ ୟୁନିଅନରେ ଥିଲା କି ନାହିଁ ମୁଁ କହି ପାରିବିନି, କିନ୍ତୁ ଭାରତରେ ସେହି ଦୁଇଟିର ଆବଶ୍ୟକତା ଥିଲା ଏହି କଥା ମୁଁ କେବେ ହେଁ ହୃଦବୋଧ କରି ପାରିଲିନି । ସୋଭିୟେତ କମ୍ୟୁନିଷ୍ଟ ପାର୍ଟିର ନୀତିର ଅନୁସରଣ କରି ଗୋର୍ବାଚୋଭ୍ ଯାହା କହିଲେ ତାକୁ ମାର୍କ୍ସବାଦ-ଲେନିନବାଦର ବିକାଶ ବୋଲି କୁହାଗଲା । ସମାଲୋଚନା ଓ ସ୍ୱାଧୀନ ଚିନ୍ତାର ଅଭାବରୁ ଭାରତର ସମାଜବାଦୀ ଆନ୍ଦୋଳନ କ୍ଷତିଗ୍ରସ୍ତ ହୋଇଛି ।

ଇତିହାସର ଅଭିଜ୍ଞତାକୁ ବିଶ୍ଳେଷଣ କରି ତାର ନିର୍ଯ୍ୟାସ ଅନୁସାରେ ଭବିଷ୍ୟତର କର୍ମପନ୍ଥା ସ୍ଥିର କରିବାରେ ମଧ୍ୟ ସେ ଦକ୍ଷ ଥିଲେ । ଗଦର ପାର୍ଟିର ଇତିହାସ

ଓ ଆଇରିଶ୍ ବିଦ୍ରୋହର ଇତିହାସ ବିଶ୍ଳେଷଣ କରି ତାର ନିର୍ଯ୍ୟାସ ଭିତ୍ତିରେ ନିଜକୁ ସଂଶୋଧନ କରି ସନ୍ତ୍ରାସବାଦ ପରିତ୍ୟାଗ କରି କମ୍ୟୁନିଷ୍ଟ ବିପ୍ଳବୀ ହୋଇଥିଲେ ।

ତାଙ୍କ ବେଳର ସେହି ବାସ୍ତବ ପରିସ୍ଥିତିରେ କମ୍ୟୁନିଷ୍ଟ ମତବାଦର ବାର୍ତ୍ତା ତ୍ୟାଗ ଓ ବଳିଦାନ ତଥା କୋର୍ଟକଚେରି ମାଧ୍ୟମରେ ଜନସାଧାରଣଙ୍କ ନିକଟରେ ପହଞ୍ଚାଇ ହେବ ବୋଲି ଭଗତ ସିଂ ଓ ତାଙ୍କ ସାଥିମାନେ ଫାଶୀଖୁଣ୍ଟରେ ଝୁଲି ଥିଲେ ଏବଂ ସେହି ଲକ୍ଷ୍ୟରେ ସଫଳ ମଧ୍ୟ ହୋଇଥିଲେ । ଅଥଚ ପରବର୍ତ୍ତୀ ଅବସ୍ଥାରେ ତାହାର ଆବଶ୍ୟକତା ନଥିବା ହେତୁ ବିପ୍ଳବୀମାନଙ୍କୁ ବିପ୍ଳବ ପାଇଁ ଆତ୍ମବଳି ନଦେଇ ବିପ୍ଳବ ପାଇଁ ବଞ୍ଚିବାକୁ ହେବ ବୋଲି କହିଥିଲେ ।

ଭବିଷ୍ୟତ ସମାଜରେ ବିପ୍ଳବୀମାନଙ୍କର ଭୂମିକା ସମ୍ପର୍କରେ ମଧ୍ୟ ତାଙ୍କ ମତାମତ ସୁସ୍ପଷ୍ଟ । ସେ କହିଥିଲେ,

> ''ବିପ୍ଳବର ଚିରନ୍ତନ ଅଗ୍ରଗତିକୁ ରୋକିବା ପାଇଁ ପ୍ରତିକ୍ରିୟାଶୀଳ ଶକ୍ତିଗୁଡ଼ିକ ଯେପରି ଶକ୍ତି ଠୁଳ କରି ନପାରିବେ ସେଥିପାଇଁ ବିପ୍ଳବର ଆତ୍ମା ମାନବ ସମାଜର ସକଳ ଆତ୍ମାରେ ସର୍ବଦା ପରିବ୍ୟାପ୍ତ ହୋଇ ରହିବା ଉଚିତ । ଗୋଟିଏ 'ଭଲ' ବ୍ୟବସ୍ଥା ଯେପରି ବିଶ୍ୱକୁ କଳୁଷିତ କରି ନପାରେ, ସେଥିପାଇଁ ନୂଆକୁ ସ୍ଥାନ ଦେବା ଉଦ୍ଦେଶ୍ୟରେ ପୁରୁଣା ବ୍ୟବସ୍ଥା, ସର୍ବଦା ଓ ନିତ୍ୟ, ବଦଳିବା ଉଚିତ ।''[୧୮]

ବିପ୍ଳବୀମାନଙ୍କର ଭବିଷ୍ୟତ ଦାୟିତ୍ୱ ସମ୍ପର୍କିତ ଏହି ବକ୍ତବ୍ୟର ଅର୍ଥ ହେଲା କ୍ଷମତା ଦଖଲ କରିବା ପାଇଁ ପ୍ରକ୍ରିୟାର ଆରମ୍ଭ ସମୟ ଠୁଁ କ୍ଷମତା ଦଖଲ କରିବା ପର୍ଯ୍ୟନ୍ତର ସମୟକୁ ହିଁ ବିପ୍ଳବ କୁହାଯାଇ ପାରିବ ନାହିଁ । ବିପ୍ଳବ ହେଉଛି ଏକ ନିରନ୍ତର ଧାରା । ତେଣୁ ବିପ୍ଳବର ଆତ୍ମା ସମସ୍ତଙ୍କ ହୃଦୟରେ ସର୍ବଦା ଓ ନିତ୍ୟ ବିଦ୍ୟମାନ ରହିବା ଉଚିତ । ଅର୍ଥାତ୍ ସମସ୍ତେ ନିରବଚ୍ଛିନ୍ନ ଭାବେ ବିପ୍ଳବୀ ହୋଇ ରହିବା ଆବଶ୍ୟକ । ଯଦି ସମାଜର ସମସ୍ତେ ବିପ୍ଳବୀ ହୋଇ ନ ରହିବେ, ତେବେ ବିପ୍ଳବର ଶତ୍ରୁ ପ୍ରତିକ୍ରିୟାଶୀଳ ଗୋଷ୍ଠୀ ଶକ୍ତି ଠୁଳ କରିବାରେ ସକ୍ଷମ ହେବେ । ସାମନ୍ତବାଦୀ ସାମାଜିକ ଓ ଅର୍ଥନୈତିକ ବ୍ୟବସ୍ଥା ବିରୁଦ୍ଧରେ ସଂଗ୍ରାମ କାଳରେ ଗଣତାନ୍ତ୍ରିକ ବିପ୍ଳବମାନ ସଂଗଠିତ ହୋଇ ପୁଞ୍ଜିବାଦୀ ଅର୍ଥନୈତିକ ବ୍ୟବସ୍ଥା ତଥା ସମାଜ ପ୍ରତିଷ୍ଠା ହୋଇଥିଲା । ଆରମ୍ଭରେ ତାର ଏକ ପ୍ରଗତିଶୀଳ ଭୂମିକା ଥିଲା । କିନ୍ତୁ ବୈପ୍ଳବିକ ଆତ୍ମା କାଳକ୍ରମେ ଲୋକଙ୍କ ହୃଦୟରୁ ମରିଯିବା ହେତୁ ଏହା ଏକ ପ୍ରତିକ୍ରିୟାଶୀଳ ବ୍ୟବସ୍ଥାରେ ପରିଣତ ହୋଇ ଆଜି ବିଶ୍ୱକୁ କଳୁଷିତ କରୁଛି । ସେହିପରି ସୋଭିଯେତ ୟୁନିଅନର ଜନସାଧାରଣ ନିରନ୍ତର ବିପ୍ଳବୀ ହୋଇ ନ ରହିବା ହେତୁ ସେଠାରେ ପ୍ରତିକ୍ରିୟାଶୀଳ ଗୋଷ୍ଠୀ କାଳକ୍ରମେ ଶକ୍ତିଶାଳୀ ହୋଇ ସୋଭିଯେତ୍ ୟୁନିଅନକୁ ଓ ବିଶ୍ୱର ସମାଜବାଦୀ ଅର୍ଥନୈତିକ ବ୍ୟବସ୍ଥାକୁ ଉପର ଆଡୁ ଭୁଷୁଡ଼େଇ ଦେଲେ । ଶ୍ରମିକ ଚାଷୀଙ୍କ ଭୂସ୍ୱର୍ଗକୁ ଚୁରମାର୍ କରିଦେଲେ । ତେଣୁ ବିପ୍ଳବର ଆତ୍ମାକୁ ହୃଦୟରେ ବହି ତାକୁ ସଦା ତେଜିଆନ କରି ରଖିବା ତଥା ବିପ୍ଳବର

ସୁରକ୍ଷା କରିବା ଦାୟିତ୍ୱ ବିପ୍ଳବୀ ଜନତାଙ୍କର । ବିପ୍ଳବର ସ୍ୱାର୍ଥ, ସାଧାରଣ ଜନତାଙ୍କର ସ୍ୱାର୍ଥର ସଦା ରକ୍ଷକ ହେବା ଦାୟିତ୍ୱ ଜନତାଙ୍କର ନିଜର । ଜନତା ଯଦି କୌଣସି ଦଳକୁ ଓ ତାର ନେତାମାନଙ୍କୁ ସେମାନଙ୍କର 'ବାନ୍ଧ ବାନ୍ଧ ଦଉଡ଼ି, ମାର ମାର ଠେଙ୍ଗା' ଭାବି ସେମାନଙ୍କ ଉପରେ ସମସ୍ତ ଦାୟିତ୍ୱ ନ୍ୟସ୍ତ କରି ନିଜ ସ୍ୱାର୍ଥର ସୁରକ୍ଷା ଦାୟିତ୍ୱରୁ ଓହରି ଯିବେ, ତେବେ ସେମାନେ ପ୍ରଥମେ ଜନତାଙ୍କୁ ବାନ୍ଧିବେ, ଜନତାଙ୍କୁ ମାରିବେ, ଜନତାଙ୍କର ସ୍ୱାର୍ଥକୁ ଆତ୍ମସାତ୍ କରବେ, ନିଜ ସ୍ୱାର୍ଥରେ ପରିଣତ କରିଦେବେ । ତେଣୁ ପୁଞ୍ଜିବାଦୀ ସମାଜର ଶୋଷଣକଷଣରୁ ମୁକ୍ତି ପାଇବା ପାଇଁ ବିପ୍ଳବ ଯେପରି ଅପରିହାର୍ଯ୍ୟ, ଜନତାଙ୍କ ସ୍ୱାର୍ଥରେ ଜନତାଙ୍କ ଦ୍ୱାରା ବିପ୍ଳବର ସୁରକ୍ଷା ମଧ୍ୟ ସେପରି ଅପରିହାର୍ଯ୍ୟ ।

ଏମିତି ତ ବିପ୍ଳବ କେବେ ହେବ ସେହି ସମୟ ସମ୍ପର୍କରେ କେହି ଭବିଷ୍ୟ ବାଣୀ କରି ପାରିବେ ନି । କିନ୍ତୁ ବିପ୍ଳବର ଆବଶ୍ୟକତା ହୃଦୟଙ୍ଗମ କରି ଉପସ୍ଥିତ ପରିସ୍ଥିତିର ଭିତ୍ତିରେ ଏକ କାର୍ଯ୍ୟକ୍ରମ ପ୍ରସ୍ତୁତ କରିବାକୁ ହେବ । ଭଗତ ସିଂ କହିଥିଲେ,

> ''ଏହି କାର୍ଯ୍ୟକ୍ରମର ସମ୍ପୂର୍ଣ୍ଣତା ପାଇଁ ଅନ୍ତତଃ କୋଡ଼ିଏ ବର୍ଷ ଆବଶ୍ୟକ । ବର୍ଷକ ମଧ୍ୟରେ ସ୍ୱରାଜ ଆଣିବା ପାଇଁ ଗାନ୍ଧିଙ୍କର କଳ୍ପନାବିଳାସୀ ପ୍ରତିଶ୍ରୁତି ଭଳି ଦଶ ବର୍ଷ ମଧ୍ୟରେ ବିପ୍ଳବ କରିବା ପାଇଁ ତୁମର ଯଦି କୌଣସି ଯୁବସୁଲଭ ସ୍ୱପ୍ନ ଥାଏ ତେବେ ତାକୁ ଫୋପାଡ଼ି ଦିଅ ।''[୯୯]

ସଫଳତା ଐତିହାସିକ ପରିସ୍ଥିତି ଉପରେ ନିର୍ଭର କରେ, କିନ୍ତୁ ପରିସ୍ଥିତି ଯେତେବେଳେ ସେହି ସୁଯୋଗ ଦେବ ତାକୁ ହାତ ଛଡ଼ା ନ କରିବା ପାଇଁ ସଦା ପ୍ରସ୍ତୁତ ହୋଇ ରହିଥିବା ଆବଶ୍ୟକ । ଭଗତ ସିଂ କହିଥିଲେ,

> '' ... ବିପ୍ଳବ ବା ସ୍ୱାଧୀନତା ପାଇଁ କୌଣସି ଛୋଟିଆ ରାସ୍ତା ନାହିଁ । 'ଏହା କୌଣସି ସୁନ୍ଦରୀ ଭଳି ସକାଳୁ ସକାଳୁ ଆମକୁ ଦେଖା ଦେବନି' ଏବଂ ଯଦି ଏଭଳି ହେବ ତେବେ ସେହି ଦିନଟି ଆମ ପାଇଁ ବଡ଼ ଅଶୁଭ ଦିନ ହେବ । କୌଣସି ବୁନିଆଦି କାମ ନ ହୋଇ, ଲଢୁଆ ଜନତା ନଥାଇ, କୌଣସି ପାର୍ଟି ନଥାଇ ଯଦି ବିପ୍ଳବ ସବୁ ଦିଗରୁ ପ୍ରସ୍ତୁତ ହୋଇଗଲା, ତେବେ ତାହା ଏକ ଅସଫଳତା ହେବ ।''[୧୦୦]

> '' ... ଲଢୁଆ ଜନତାଙ୍କ ନିକଟରୁ ଅଲଗା ହେଇ ଏକ ଅଶିକ୍ଷିତ ଗୋଷ୍ଠୀର ବିଦ୍ରୋହ ସଫଳ ହେବାର ସମ୍ଭାବନା ଏ ଯୁଗରେ ନାହିଁ ।''[୧୦୧]

ତେଣୁ ଶିକ୍ଷା ହିଁ କାର୍ଯ୍ୟକ୍ରମର ପ୍ରଥମ ପଦକ୍ଷେପ ହେବ ।

> ''ଲୋକଙ୍କ ମଧ୍ୟରେ ପାର୍ଟି ରାଜନୈତିକ ସଚେତନତା ସୃଷ୍ଟି କରିବ, କିନ୍ତୁ କେବଳ ଜାତୀୟ ରାଜନୀତି ସମ୍ପର୍କରେ ନୁହେଁ । ଶ୍ରେଣୀ ରାଜନୀତି ସମ୍ପର୍କରେ ମଧ୍ୟ ରାଜନୈତିକ ସଚେତନତା ସୃଷ୍ଟି କରିବ । ସେହି ଉଦ୍ଦେଶ୍ୟର ସଫଳତା ପାଇଁ

ପାର୍ଟି ଏକ ବିରାଟ ପ୍ରକାଶନ ଅଭିଯାନ ସଂଗଠିତ କରିବା ଉଚିତ । [ସର୍ବହରା ସମ୍ପର୍କୀତ ସମସ୍ତ ବିଷୟବସ୍ତୁ ତଥା] ସମାଜବାଦୀ ତତ୍ତ୍ୱ ସମ୍ପର୍କରେ ଜନଗଣଙ୍କୁ ଜ୍ଞାନ ପ୍ରଦାନ କଲା ଭଳି ସମସ୍ତ ବହି ସେମାନଙ୍କ ହାତପାଆନ୍ତରେ ରହିବ ଓ ବହୁଳ ଭାବରେ ବଣ୍ଟନ କରାଯିବ । ଲେଖାଗୁଡ଼ିକ ସରଳ ଓ ସ୍ପଷ୍ଟ ହେବା ଉଚିତ ।''[୧୦୨]

ପାର୍ଟି ନେତୃତ୍ୱର ଯୋଗ୍ୟତା ଶିକ୍ଷା ସମ୍ପର୍କରେ ଭଗତ ସିଂ ଲେଖିଥିଲେ,

''ବାସ୍ତବରେ ଏମାନେ ହିଁ ଆନ୍ଦୋଳନର ବୁଦ୍ଧିକେନ୍ଦ୍ର । ତେଣୁକରି ସେମାନଙ୍କୁ ଦୃଢ଼ ଚରିତ୍ରର ଆବଶ୍ୟକତା ରହିଛି । ଅର୍ଥାତ୍ ବିପ୍ଳବ ପଥରେ ପ୍ରଥମେ ପ୍ରଥମେ ପାଦ ଥୋଇଥିବା ଲୋକଙ୍କୁ ନେତୃତ୍ୱ ଦେଇ ପାରୁଥିବେ, ବିପ୍ଳବକୁ ମଧ ନେତୃତ୍ୱ ଦେଇ ପାରୁଥିବେ, ସେହି କ୍ଷମତା ରହିବା ଆବଶ୍ୟକ । ରାଜନୈତିକ, ଆର୍ଥିକ ଓ ଐତିହାସିକ ସମସ୍ୟା, ସାମାଜିକ ଝୁଙ୍କ, ପ୍ରଗତିଶୀଳ ବିଜ୍ଞାନ, ଯୁଦ୍ଧର ନୂଆ ନୂଆ ବୈଜ୍ଞାନିକ ଉପାୟ ଓ ତାର କଳା, ଇତ୍ୟାଦି ବିଷୟରେ ଶୃଙ୍ଖଳିତ ରୂପେ କରା ଯାଇଥିବା ଗଭୀର ଅଧ୍ୟୟନ ସେମାନଙ୍କର ଜ୍ଞାନର ଭିତ୍ତି ହେବା ଉଚିତ । ପରିଶ୍ରମୀ ବୁଦ୍ଧିଜୀବୀ ଓ ପରିଶ୍ରମୀ କର୍ମକର୍ତ୍ତାମାନେ ହିଁ ବିପ୍ଳବର ଜନ୍ମଦାତା ହୁଅନ୍ତି ।''[୧୦୩]

ଅନ୍ୟମାନେ ପାର୍ଟି ଓ ଶ୍ରମିକ-କୃଷକଙ୍କ ମଧ୍ୟରେ ଯେଉଁ ନକଲି ପ୍ରାଚୀର ଠିଆ କରେଇଛନ୍ତି ତାକୁ ଶିକ୍ଷା ମାଧ୍ୟମରେ ଧୂଳିସାତ୍ କରିବାକୁ ହେବ ।

''ଏହି ସମୟରେ ସବୁଠୁଁ ଜରୁରୀ କାମ ଏୟା ଯେ ଆମେ ଲୋକଙ୍କ ପାଖରେ ପହଞ୍ଚିବା । ଗୋଟିଏ ପାଖରୁ ଥପା ଯାଇଥିବା ଅଜ୍ଞାନତା ଏବଂ ଅନ୍ୟ ପାଖରୁ ବୁଦ୍ଧିଜୀବୀମାନଙ୍କର ଉଦାସୀନତା ଶିକ୍ଷିତ ବିପ୍ଳବୀ ଓ ସେମାନଙ୍କର ଦାଆ-ହାତୁଡ଼ିବାଲା ଅଭାଗା ଅର୍ଦ୍ଧଶିକ୍ଷିତ ସାଥୀମାନଙ୍କ ମଝିରେ ଏକ ନକଲି ପ୍ରାଚୀର ଠିଆ କରାଇଛନ୍ତି । ବିପ୍ଳବୀମାନଙ୍କୁ ନିଶ୍ଚିତ ରୂପେ ଏହି ପ୍ରାଚୀରକୁ ତଳେ ଶୁଆଇବାକୁ ପଡ଼ିବ ।''[୧୦୪]

ଏହା ହିଁ ବିପ୍ଳବୀ କାର୍ଯ୍ୟକ୍ରମର ପ୍ରଥମ ପଦକ୍ଷେପ ହେଉ ।

ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମ ପାଇଁ ଆହ୍ୱାନ କରାଗଲାଣି । ଏହି ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମର ପ୍ରତୀକ ଭଗତ ସିଂ ହୁଅନ୍ତୁ, ବିପ୍ଳବୀ ପ୍ରାଣର ପ୍ରତୀକ ଭଗତ ସିଂ ହୁଅନ୍ତୁ । ଯେଉଁମାନେ ଆନ୍ତରିକତା ସହ ଭାରତରେ ବିପ୍ଳବ ସଂଗଠିତ କରିବା ପାଇଁ ଚାହୁଁଛନ୍ତି, ସେମାନେ ବିପ୍ଳବର ସ୍ୱାର୍ଥରେ ଅନ୍ୟାନ୍ୟ ସ୍ୱାର୍ଥର ଖୋଳ ଭିତରୁ ବାହାରକୁ ଆସନ୍ତୁ । ଭାରତୀୟ ବାସ୍ତବତାକୁ ହାତମୁଠାରେ ରଖିବା ପାଇଁ ଖୋଲା ହୃଦୟରେ ସମସ୍ତ ସଚ୍ଚୋଟତା ସହ ତର୍କ ବିତର୍କ ମାଧ୍ୟମରେ ଏକ ବୌଦ୍ଧିକ ସମୁଦ୍ରମନ୍ଥନ ହେଉ । ଭଗତ ସିଂଙ୍କ ସମୟରେ ମାର୍କ୍ସବାଦ-ଲେନିନବାଦର ସମସ୍ତ ବହି ମିଳୁ ନଥିଲା । ଯାହା ବି ମିଳୁ ଥିଲା ସେଗୁଡ଼ିକ ମଧ୍ୟରୁ କେତେକ ଲୁଚା ଚୋରାରେ ଅବା ଜେଲ୍ ଅଧିକାରୀଙ୍କ

ଅନୁମତିରେ ହିଁ ପଢ଼ିବା ପାଇଁ ସେ ସକ୍ଷମ ହୋଇଥିଲେ । ତାରି ଭିତ୍ତିରେ ହିଁ ସେ ଭାରତର ବିପ୍ଳବ ସମ୍ପର୍କରେ ଯାହା କହିବା ଉଚିତ ମଣିଲେ ତାହା କହିଥିଲେ । ତାଙ୍କ ସମୟର ଭାରତ ଆଜି ଆଉ ନାହିଁ । ମାର୍କ୍ସବାଦ-ଲେନିନବାଦକୁ ଆଜିର ଭାରତୀୟ ପରିପ୍ରେକ୍ଷୀରେ ବାସ୍ତବତା ସହ ଖାପ ଖୁଆଇ ଆଜିର ସ୍ଥିତିକୁ ଆଣିବାର ଆବଶ୍ୟକତା ରହିଛି । ତେଣୁ ଏକ ବୌଦ୍ଧିକ ମନ୍ଥନ ଜରୁରି । ସାଧାରଣ ନାଗରୀକ ଓ ମାର୍କ୍ସବାଦ-ଲେନିନବାଦର ଅନୁଗାମୀମାନେ ସେହି ତର୍କବିତର୍କ ପଢ଼ନ୍ତୁ, ସେମାନଙ୍କର ନିଜନିଜର ଅଭିଜ୍ଞତା ଭିତ୍ତିରେ କାହାର ଚିନ୍ତା ବାସ୍ତବ ଓ କାହାର ଚିନ୍ତା ଅବାସ୍ତବ ତାହା ଉପଲବ୍ଧି କରନ୍ତୁ । ଅଭିଜ୍ଞତାଲବ୍ଧ ସତ୍ୟକୁ କେନ୍ଦ୍ରରେ ରଖି ତାର ଚତୁର୍ଦିଗରେ ସଂଗଠିତ ହୁଅନ୍ତୁ । ଏହି ଧାରା ଜରିଆରେ ବିପ୍ଳବକୁ ନେତୃତ୍ୱ ଦେବା ଭଳି ଏକ ନେତୃମଣ୍ଡଳୀ ଉଭା ହୁଅନ୍ତୁ ।

ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମର ପ୍ରତୀକ ଭଗତ ସିଂଙ୍କର ଶେଷ ଚିନ୍ତାର ପ୍ରଚାର ପ୍ରସାର କରାଯାଉ । ଭଗତ ସିଂ ଓ ତାଙ୍କ ସାଥୀମାନଙ୍କର ତ୍ୟାଗ ଓ ଆତ୍ମବଳିର ଅସଲ କାରଣ ଜନସାଧାରଣଙ୍କ ସମ୍ମୁଖରେ ରଖାଯାଉ । ସେମାନଙ୍କର ତ୍ୟାଗ ଓ ଆତ୍ମବଳି ଜନତାକୁ ଅନୁପ୍ରାଣିତ କରୁ ।

ଫାଶୀ ପୂର୍ବରୁ ଭଗତ ସିଂ ପଢ଼ି ମୋଡ଼ି ରଖିଥିବା ଲେନିନଙ୍କ *ରାଷ୍ଟ୍ର ଓ ବିପ୍ଳବ* ବହି ଆଉ ଖୋଲା ହୋଇନି । ତାକୁ ଲୋକଲୋଚନରୁ ଲୁଚେଇ ରଖିବା ପାଇଁ ଯିଏ ଯେଉଁ ଅଳିଆ ପାରିଲା ତା ଉପରେ ଲଦିଛନ୍ତି । ସେହି ଅମୂଲ୍ୟ ଗ୍ରନ୍ଥର ଯେଉଁ ପୃଷ୍ଠାଟି ମୋଡ଼ା ହୋଇ ରହିଛି ତାଠାରୁ ଆମକୁ ଆଗକୁ ଯିବାକୁ ହେବ । ତେଣୁ ଭାରତରେ ବିପ୍ଳବ ହୋଇ ପାରିନି ବୋଲି ଭଗତ ସିଂଙ୍କ ଶହୀଦତ୍ୱ ବ୍ୟର୍ଥ ହୋଇି ଆମେ କହି ପାରିବାନି । ଖଟିଖିଆ ମଣିଷକୁ ଶୋଷଣମୁକ୍ତ କରିବା ମାର୍କ୍ସ ଯେଉଁ ତତ୍ତ୍ୱ ବାଢ଼ୁ ଥିଲେ ଓ ଯାହାର ବିକାଶ ପାଇଁ ନିଜ ଜୀବନକୁ ଉତ୍ସର୍ଗ କରି ଦେଇଥିବା ଯୋଗୁଁ ସେ ତାଙ୍କ ଜୀବନରେ କି କଷ୍ଟ ସହି ନଥିଲେ! ତାଙ୍କ ସ୍ତ୍ରୀ — ଜେନୀ ଲେଖିଥିବା ଚିଠି ଖଣ୍ଡିଏ ପଢ଼ିଲେ ବର୍ତ୍ତମାନ ମଧ୍ୟ ଆଖି ଲୁହରେ ଭରିଯାଏ । ବଡ଼ ଚାରିଟି ଛୁଆଙ୍କ ମଧ୍ୟରୁ ଦୁଇଟି ମରି ଯାଇଥିଲେ । ୧୮୫୦ ରେ ଏକ କନ୍ୟା ଜାତ ହୋଇ ଦୁଇ ବର୍ଷ ନପୂରୁଣୁ ମଲା । ଜେନୀ ଲେଖିଥିଲେ,

> "୧୮୫୨ର ଇଷ୍ଟର ପର୍ବ ଵାଳରେ ଆମର ନିରୀହ କୁନି ଫ୍ରାଞ୍ଜେସ୍କା ଦୁଃସହ ଦମା ବେମାରିରେ ପଡ଼ିଲା । ତିନି ଦିନ ଧରି ସେ ମୃତ୍ୟୁ ସହ ସଂଗ୍ରାମ କଲା ଓ ବହୁତ ଦୁଃଖ ପାଇଲା । ତାର ଛୋଟିଆ ଜୀବନହୀନ ଦେହଟା ଘରର ପଛ ଭାଗର କୋଠରୀଟାରେ ପଡ଼ି ରହିଥିଲା । ଆମେ ସମସ୍ତେ ଆଗ ଭାଗର କୋଠରୀକୁ ଗଲୁ ଓ ରାତି ହେବାରୁ ତଳେ ଶେଜ ପାରିଲୁ । ବଞ୍ଚି ରହିଥିବା ତିନୋଟି ଛୁଆ ଆମ ସହ ଶୋଇଲେ ଓ ଆମେ ପର କୋଠରୀରେ ଶୀତଳ ଓ ଜୀବନହୀନ ଭାବେ ପଡ଼ି ରହିଥିବା ଶାନ୍ତଶିଷ୍ଟ ଛୋଟିଆ ପରୀଟି ପାଇଁ କାନ୍ଦୁଥିଲୁ । ନିହାତି

ଭୟଙ୍କର ଦାରିଦ୍ର୍ୟ କାଳରେ ଶିଶୁଟିର ମୃତ୍ୟୁ ହୋଇଥିଲା । ପରଦିନ ସକାଳେ ଆମ ଘର ପାଖରେ ରହୁଥିବା ଓ ଆମ ଘରକୁ ନିକଟରେ ବୁଲି ଆସିଥିବା ଜଣେ ଫରାସୀ ଶରଣାର୍ଥୀଙ୍କ ଦ୍ୱାରସ୍ଥ ହେଲି । ସେ ମୋତେ ବନ୍ଧୁତା ଓ ସହାନୁଭୂତି ସହ ସ୍ୱାଗତ କଲେ ଓ ଦୁଇ ପାଉଣ୍ଡ ଦେଲେ । ସେଇ ପଇସାରେ ହିଁ ମୋର ଛୁଆଟି ଶାନ୍ତିରେ ଶୋଇବା ପାଇଁ କଫିନଟିଏ କିଣା ଯାଇଥିଲା । ଜନ୍ମ ହେଲା ବେଳେ ତା ପାଇଁ ଝୁଲଣାଟିଏ ନଥିଲା, ଶେଷର ଛୋଟିଆ ଶାମୁକା ଟିକକ ମଧ୍ୟ ତାକୁ ବହୁତ ଡେରିରେ ମିଳିଲା ।''[୧୦୫]

ମାର୍କ୍ସଙ୍କର ଦୁଃଖ ଓ ତ୍ୟାଗ ବ୍ୟର୍ଥ ହୋଇ ନଥିଲା । ଋଷିଆର କମ୍ୟୁନିଷ୍ଟ ଆନ୍ଦୋଳନ ଜନ୍ମ ଦେଇଥିଲା ଲେନିନଙ୍କୁ ଏକ ସଫଳ ବିପ୍ଳବର ନେତୃତ୍ୱ ଦେବା ପାଇଁ ଓ ୧୯୧୭ ନଭେମ୍ବର ୭ ଦିନ ବିଶ୍ୱର ପ୍ରଥମ ସମାଜବାଦୀ ରାଷ୍ଟ୍ର ସୋଭିଯେତ୍ ୟୁନିଅନ ପ୍ରତିଷ୍ଠା ହୋଇଥିଲା । ଚୀନର କମ୍ୟୁନିଷ୍ଟ ଆନ୍ଦୋଳନ ଜନ୍ମ ଦେଇଥିଲା ମାଓ ସେଦୋଙ୍ଗଙ୍କୁ । ଭିଏତ୍‌ନାମ ହୋ ଚି ମିନ୍‌ଙ୍କୁ । ଇତ୍ୟାଦି ।

*ଭାରତର ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମ*
*ଆଜ ଜଣେ ଭଗତ ସିଂଙ୍କୁ ଜନ୍ମ ଦେଉ ।*

*ଇନ୍‌କିଲାବ୍ ଜିନ୍ଦାବାଦ !!!*
*ଭଗତ ସିଂ ଜିନ୍ଦାବାଦ !!!*

## REFERENCES

Firoz Alam, *Great Indian Revolutionary: Bhagat Singh*, Sahni Publications. 4777, Dr. Mitra Gali. Roshanara Road, Delhi –7.

Gurdev Singh Deol, *Shaheed Bhagat Singh: A Biography*. Patiala: Punjabi University, 1969.

R. Palme Dutt, *India Today*. Calcutta: Manisha Granthalaya (P) Ltd., 1986.

Arnold Kettle, *Karl Marx: Founder of Modern Communism*. London: Weidenfeld & Nicolson (Educational) Ltd., 1963.

Satyendra Narayan Mazumdar, *In Search of A Revolutionary Ideology and A Revolutionary Programme: A Study in the Transition from National Revolutionary Terrorism to Communism.* New Delhi: People's Publishing House, 1979.

B. Pattabhi Sitaramayya, *The History of the Indian National Congress,* Volume I (1885-1935), Bombay: Padma Publications. First Published 1935, Reprinted 1946.

Shiv Varma (Ed.), *Selected Writings of Bhagat Singh,* (2nd Edition: 1996), Samajwadi Sahitya Sadan, Kanpur

1. "What a terrible indifference! If they were misguided, if they were frenzied, let them be so. They were fearless patriots, in any case. Whatever they did, they did for this wretched country. They could not bear injustice. They could not countenance the fallen nation. The oppression of the poor people became insufferable for them. They could not tolerate exploitation of the masses. They challenged and jumped into action. They were full of life. Oh! the terrible toll of their dedicated deeds! ... But we the cowards and human wretches lack the courage of even sighing and putting off our celebrations even for a moment. What a disheartening deed!" [Bhagat Singh, "Blood Sprinkled on the Day of Holi" in *Selected Writings of Shaheed Bhagat Singh,* Ed. by Shiv Varma. Kanpur: Samajwadi Sahitya Sadan, 1996. Pp. 57ff.]
2. "Gandhi had refused to discuss the release of prisoners in his interview with the Viceroy on the 23rd December, 1929. The prisoners could afford to wait a while in the jails, said he; he had concentrated on the Dominion Status." [B. Pattabhi Sitaramayya, *The History of the Indian National Congress,* Volume I (1885-1935). P. 362.]
3. "The Viceroy spoke with reserve. He had never made any promise in the matter beyond assuring Gandhi that he would employ his good offices with the Punjab Government in this behalf. He himself had the right to commute the sentences, but that is a right that could not be invoked or exercised for political reasons. On the contrary, it was the political reasons themselves that would stand in the way of the Punjab Government yielding in the matter." [B. Pattabhi Sitaramayya, *The History of the Indian National Congress,* Volume I (1885-1935). P. 442.]
4. Gandhi writes, "I asked for bread and received a stone instead. The English Nation responds only to force, and I am not surprised by

the Viceregal reply." [B. Pattabhi Sitaramayya, *The History of the Indian National Congress,* Volume I (1885-1935). P. 377.]

5. At Navsari, however, he warned the people against the social boycott of Government officials. Kaira District became the theatre of war in Gujrat and Gandhi, in an article in Navajivan, wrote:— x x x "The people of Kaira District should take a warning and enforce boycott within limits. I have indicated, for instance, boycott of village officers should be with regard to their office only. Their order should not be obeyed but their food supplies should not be stopped. They should not be ejected from their houses. If we are not capable of doing this we should give up the boycott." [B. Pattabhi Sitaramayya, *The History of the Indian National Congress,* Volume I (1885-1935). P. 391.]

6. The resolution No. 3 of the Working Committee which met at Allahabad on the 27th June says,

"3. This Committee calls upon the people to organise and enforce a strict social boycott of all Government officials and others known to have participated directly in the atrocities committed upon the people to stifle the national movement." [B. Pattabhi Sitaramayya, *The History of the Indian National Congress,* Volume I (1885-1935). P. 405.]"

7."(9) Discharge of all political prisoners, save those condemned for murder or attempt to murder, or trial by ordinary judicial tribunals, withdrawal of all political prosecutions, abrogation of Section 124-A and Regulation III of 1818, and giving permission to all Indian exiles to return."[B. Pattabhi Sitaramayya, *The History of the Indian National Congress,* Volume I (1885-1935). P. 366.]

8. *Some of the provisions of the Gandhi-Irwin Agreement:*

"(10) Ordinances promulgated in connection with the Civil Disobedience movement will be withdrawn.

"Ordinance No. 1 of 1931 relating to the terrorist movement does not come within the scope of the provision.

x x x

"(12) (i) Pending prosecutions will be withdrawn if they have been filed in connection with the Civil Disobedience movement and relate to offences which do not involve violence other than technical violence, or incitement to such violence.

"(ii) The same principles will apply to proceedings under the security provisions of the Criminal Procedure Code.

"(iii) Where a Local Government has moved any High Court or has initiated proceedings under the Legal Practitioners' Act in regard to the conduct of Legal Practitioners in connection

with the Civil Disobedience movement, it will make application to the Court concerned for permission to withdraw such proceedings, provided that the alleged conduct of the person concerned does not relate to violence or incitement to violence.

"(iv) Prosecutions, if any, against soldiers and Police involving disobedience of orders will not come within the scope of this provision.

"(13) (i) Those prisoners will be released who are undergoing imprisonment in connection with the Civil Disobedience movement for offences which did not involve violence, other than technical violence, or incitement to such violence.

"(ii) If any prisoner who comes within the scope of (i) above has been sentenced for a jail offence, not involving violence, or other than technical violence, incitement to such violence, the latter sentence also will be remitted, or if a prosecution relating to an offence of this character is pending against such a prisoner, it will be withdrawn.

"(iii) Soldiers and Police convicted of offences involving disobedience of orders — in the very few cases that have occurred — will not come within the scope of the amnesty." [B. Pattabhi Sitaramayya, *The History of the Indian National Congress,* Volume I (1885-1935). Pp. 439-40.]"

9. " ... Lord Irwin was unable to help in the matter, but undertook to secure a postponement of the execution till after the Karachi Congress. The Karachi session was to meet in the last week of March. But Gandhi himself definitely stated to the Viceroy that if the boys should be hanged, they had better be hanged before the Congress, than after." [B. Pattabhi Sitaramayya, *The History of the Indian National Congress,* Volume I (1885-1935). P. 442.]

10. Gandhiji wrote in his *Young India*, "I might have made the commutation a term of the settlement. It could not be so made. ... The Working Committee had agreed with me in not making commutation a condition precedent to truce. I could, therefore, only mention it." [Quoted in G. S. Deol, *Shaheed Bhagat Singh: A Biography.* Patiala: Punjabi University, 1969. P. 85.]

11. General Mohan Singh of I. N. A. says, "He (Mahatma Gandhi) could have saved Bhagat Singh from hanging, but deliberately he did not do it. He could have made the question of the release of a national hero a national question.... The entire nation was prepared to sacrifice itself. With this move he (Mahatma Gandhi) could have saved Bhagat Singh and his colleagues from death....But he could not rise above the false prestige of his

philosophy of non-violence, because Bhagat Singh's release would have given strength to the group of revolutionary heroes, a fact which Mahatma Gandhi could not tolerate." [Quoted in G. S. Deol, *Shaheed Bhagat Singh: A Biography.* Patiala: Punjabi University, 1969. P. 86.]

12. "We all felt that he was a great and unique man and a glorious leader, and having put our faith in him we gave him an almost blank cheque, for the time bieng at least." [Jawaharlal Nehru, *Autobiography,* p. 76. Quoted in R. Palme Dutt, *India To-day.* Calcutta: Manisha Granthalaya, 1986. P. 343.]
13. "Criticism and independent thinking are the two indispensable qualities of a revolutionary. Because Mahatmaji is great, therefore none should criticise him. Because he has risen above, therefore everything he says — may be in the field of Politics or Religion, Economics or Ethics — is right. Whether you are convinced or not you must say, 'Yes, that's true'. This mentality does not lead towards progress. It is rather obviously reactionary." [Bhagat Singh, "Why I am an Atheist" in *Selected Writings of Shaheed Bhagat Singh,* Ed. by Shiv Varma. Kanpur: Samajwadi Sahitya Sadan, 1996. P. 125.]
14. "As a matter of fact, even our great leaders, with the exception of perhaps Pt. Motilal Nehru, do not dare to take any responsibility on their shoulders, that is why every now and then they surrender unconditionally before Gandhi. In spite of their differences, they never oppose him seriously and the resolutions have to be carried for the Mahatma." [Bhagat Singh, "To Young Political Workers" in *Selected Writings of Shaheed Bhagat Singh,* Ed. by Shiv Varma. Kanpur: Samajwadi Sahitya Sadan, 1996. P. 115.]
15. "I do believe that, where there is only a choice between cowardice and violence, I would advise violence. I would rather have India resort to arms in order to defend her honour than that she should, in a cowardly manner, become or remain a helpless witness to her own dishonour." [*Selections From Gandhi,* Ed. by Nirmal Kumar Bose. Ahmedabad: Navajivan Publishing House, 1972. P. 162.]
16. "We are sorry to admit that we who attach so great a sanctity to human life, we who dream of a glorious future when man will be enjoying perfect peace and full liberty, have been forced to shed human blood. But the sacrifice of the individuals at the altar of the great revolution that will bring freedom to all rendering the exploitation of man by man impossible, is inevitable."[Bhagat Singh, "To Make the Deaf Hear",*Selected Writings of Shaheed Bhagat Singh,* Ed. by Shiv Varma.: Samajwadi Sahitya Sadan, 1996. P. 65.]

17. "Sorry for the death of a man. But in this man has died the representative of an institution which is so cruel, lowly and so base that it must be abolished. In this man has died an agent of the British authority in India — the most tyrannical Govt. of Govts. in the world.

"Sorry for the bloodshed of a human being; but the sacrifice of individuals at the altar of the Revolution that will bring freedom to all and make the exploitation of man by man impossible, is inevitable." [Bhagat Singh, "Beware, Ye Bureaucracy" in *Selected Writings of Shaheed Bhagat Singh*, Ed. by Shiv Varma. Kanpur: Samajwadi Sahitya Sadan, 1996. P. 62.]

18. "(11) To issue licenses to use fire-arms for self-defence, subject to popular control." [B. Pattabhi Sitaramayya, *The History of the Indian National Congress*, Volume I (1885-1935). P. 366.]

19. Gandhiji's letter:

"Dear Friend,

"I have your letter of the 13th instant. Your reasoning does not appeal to me at all. A memorial erected in honour of anybody undoubtedly means that the memorialists would copy the deeds of those in whose memory they erect the memorial. It is also an invitation to posterity to copy such deeds. I am, therefore, unable to identify myself in any way with the memorial." [Home Department (Political), 1931, Government of India, File No. 4/12 (Secret), pp. 16-17. Quoted in G. S. Deol, *Shaheed Bhagat Singh: A Biography*. Patiala: Punjabi University, 1969. Pp. 85-86.]

20. "A soldier who disobeys an order to fire breaks the oath which he has taken and renders himself guilty of criminal disobedience. I cannot ask officials and soldiers to disobey; for when I am in power, I shall in all likelihood make use of those same officials and those same soldiers. If I taught them to disobey I should be afraid that they might do the same when I am in power." [Gandhiji's reply to the French journalist Charles Petrasch on the question of the Garhwali soldiers, *Monde*, February 20, 1932. Quoted in R. Palme Dutt, *India To-day*. Calcutta: Manisha Granthalaya, 1986. P. 369.]

21. "Mass civil disobedience was the thing that was luring the people. What was it, what would it be ? Gandhi himself never defined it, never elaborated it, never visualised it even to himself. It must unfold itself to a discerning vision, to a pure heart, from step to step, much as the pathway in a dense forest would reveal itself to the wayfarer's feet as he wends his weary way until a ray of light brightens the hopes of an all but despairing wanderer." [Official "History of the Indian National Congress," 1935, p. 376. Quoted

in R. Palme Dutt, *India To-day.* Calcutta: Manisha Granthalaya, 1986. P. 343.]

22. "Those gathered at Sabarmati inquired of Gandhi about his plans. It was right that they should do so, although nobody would have asked Lord Kitchener or Marshall Foch or Von Hindenberg to unfold their plans on the eve of the Great War. Plans they had, but they might not reveal them. It was not so with Satyagraha. There was no privacy about our plans. But they were not clear-cut either. They would unfold themselves, much as the path on a misty morning reveals itself to a fast moving motor, almost from yard to yard. The Satyagrahi carries a searchlight on his forehead. It shows the way for the next step." [B. Pattabhi Sitaramayya, *The History of the Indian National Congress,* Volume I (1885-1935). P. 370.]

23. "Subhas Bose relates his disheartenment when, as an eager young disciple in his first interview with the Mahatma in those fateful days of 1921, he sought to obtain 'a clear understanding of the details — the successive stages — of his plan, leading on step by step to the ultimate seizure of power from the foreign bureaucracy' and failed to get an answer: 'What is his real expectation was, I was unable to understand. Either he did not want to give out all his secrets prematurely or he did not have a clear conception of the tactics whereby the hands of the Government could be forced.' [(Subhas Bose, "The Indian Struggle 1920-1934," p. 68.) quoted in R. Palme Dutt, *India To-day.* Calcutta: Manisha Granthalaya, 1986. P. 343.]

24. "I have no set theory to go by. I have not worked out the science of *satyagraha* in its entirity. I am still groping. You can join me in my quest if it appeals to you and you feel the call." [Nirmal Kumar Bose (Ed.), *Selections From Gandhi.* Ahmedabad: Navajivan Publishing House, 1972. P. 218.]

25. "This Congress deplores the bomb outrage perpetrated on the Viceroy's train, and reiterates its conviction that such action is not only contrary to the Creed of the Congress but results in harm being done to the national cause. It congratulates the Viceroy and Lady Irwin and their party, including the poor servants, on their fortunate and narrow escape." [B. Pattabhi Sitaramayya, *The History of the Indian National Congress,* Volume I (1885-1935). P. 356.]

26. "It is no exaggeration to say that at the moment Bhagat Singh's name was as widely known all over India and was as popular as Gandhi's. [B. Pattabhi Sitaramayya, *The History of the Indian National Congress.* Volume I (1885-1935). P. 456.]

sphere of this beautiful land of ours. It will intoxicate the youth and make him mad for freedom and revolution, and that will bring the doom of the British imperialists nearer. This is my firm conviction. I am anxiously waiting for the day when I will receive the highest award for my services to the country and my love for my people." [Quoted by Shiv Verma (Ed.) in his "Introduction" to *Selected Writings of Shaheed Bhagat Singh*. Kanpur: Samajwadi Sahitya Sadan, 1996. P. 45.]

32. "Bhagat Singh is today not a person, but a symbol. He symbolizes the spirit of revolt that has taken possession of the country." [Netaji Subhash Cahndra Bose, Home Department (Political), Government of India, 1931, file No 18/III Weekly Report dated March 26, 1931. No. 12, p. 2. Quoted in G. S. Deol, *Shaheed Bhagat Singh: A Biography*. Patiala: Punjabi University, 1969. P. 120.]

33. "Bhagat Singh was a remarkable personality, an avowed terrorist, audaciously brave with the attractive intellectual face of many agitators and an unusually gentle manner of speech." [Frank Moreas, *Jawahar Lal Nehru — A Biography*, Bombay: Jaico Publishing House, 1959. P. 131. Quoted in G. S. Deol, *Shaheed Bhagat Singh: A Biography*. Patiala: Punjabi University, 1969. P. 94.]

34. "The most distinctive trend during this period which deserves special study came to be known as *Terro-socialism*. The representatives of this trend tried to combine together violent activities including plans of localised insurrection on the pattern of Easter Rebellion at Dublin by the Irish revolutionaries, assasination of tyrannical government officials etc, with the organisation of the workers, peasants and youth and spreading of socialist ideas simultaneously. They were being strongly inclined towards the ideas of communism and Soviet Russia. At the same time they thought that preparations for violent activities and armed actions in retaliation against official repression were also on the agenda of the day. This they thought was necessary in order to rouse the masses from slumber. They failed to see the contradiction inherent in such a programme." [Satyendra Narayana Majumdar, *In Search of A Revolutionary Ideology and A Revolutinary Programme: A Study in the Transition from National Revolutionary Terrorism to Communism*. New Delhi: People's Publishing House, 1979. Pp. 168-69.]

35. "It was at this period that Bhagat Singh came to the forefront. Bhagat Singh personified the conflicting trends and pulls working on the minds of the 'terro-socialists'. He had come under the influence of ex-Ghadar revolutionaries turned communists. He had also discussions with communist leaders. He helped to spread the ideas

